# ଆହତ ଆତ୍ମା

(କ୍ଷୁଦ୍ର ଗଳ୍ପ)

ଲେଖକ—

ଶ୍ରୀ ରାମନାଥ ମାଝୀ, ଶିକ୍ଷକ
କ୍ଷିତିଭୂଷଣ ଉଚ୍ଚ ବିଦ୍ୟାଳୟ
ସୋରଡ଼ା (ଗଞ୍ଜାମ)

Writer—SRI RAMANATH MAJHI,
Mardaraj Street,
At. / Po. Kabi Suryanagar,
Ganjam.

ପ୍ରକାଶକ :—
ଶ୍ରୀ କାଶୀନାଥ ମାଝୀ,
କବିସୂର୍ଯ୍ୟ ନଗର ( ଗଞ୍ଜାମ )

ପ୍ରକାଶ କାଳ :— ବିଜୟା ଦଶମୀ
( ୧୯୭୮ )

ମୁଦ୍ରାକର:—ଶ୍ରୀ ରାମଚନ୍ଦ୍ର ସାବତ
ସତ୍ୟମାର୍ଗ ମୁଦ୍ରଣାଳୟ, ଗିରିମାର୍କେଟ ବ୍ରହ୍ମପୁର-୨

ମୂଲ୍ୟ—ତିନି ଟଙ୍କା

ପର୍ବରେ ବାଜି !, କରୁଣାମୟୀ, ଜଗତ୍ ଜନନୀଙ୍କ ଆଗମନକୁ ସ୍ୱାଗତ ଜଣାଇବା ପାଇଁ ଏ ଆଶ୍ୱିନ ସନ୍ଧ୍ୟାରେ ତରୁଣୀ ତାର କଣ୍ଠରେ ସୃଷ୍ଟି କରନ୍ତି ହଳହୁଳିର କୋଶଳ; ବୈଦିକ ବ୍ରାହ୍ମଣ ଉଚ୍ଚାରଣ କରୁଛନ୍ତି ଦୀର୍ଘ ପ୍ରଣବ ଧ୍ୱନି; କରୁଣାମୟୀ ଉମାଙ୍କ ଚରଣ ରେଣୁର ସାନ୍ନିଧ ପାଇଁ ଉତ୍ଫୁଲ୍ଲ ହୋଇ ଉଠୁଛି ଦିଗନ୍ତ ବିସ୍ତୃତ ସବୁଜ ଶସ୍ୟବନ୍ଧର, ଉତ୍ତୋଳନ ଉଦ୍ଗ୍ରୀବ ହୋଇ ଉଠିଛନ୍ତି ନଈ, ନାଳର ବନ୍ଧୁରିତ କାଶତଣ୍ଡି; ଆଜି ପୁଷ୍ପବୀଥୀରେ ଅରଣ୍ୟାନୀ ହୋଇଛି ମଞ୍ଜୁଳ, ପୁଣି ସୌରଭିତ ହୋଇଛି କାନନର ଗର୍ଭ, ମକ୍ଷିକା ଏ ପୁଷ୍ପବୀଥିରେ ତୋଳି ଖୁଲୁଛନ୍ତି ବୀଣାର ମଧୁର ଗୁଞ୍ଜନ—ସ୍ୱାଗତ ହେ ଜଗତ୍ ଜନନୀ ! ସ୍ୱାଗତ ହେ ଜଗତ୍ ଜନନୀ —ତବ ଆଶୀର୍ବାଦରୁ ଏ ଧରଣୀ ହେଉ ନିର୍ଯ୍ୟାତନା ମୁକ୍ତ, ଦୈନ୍ୟ ହେଉ ସମାପ୍ତ; ଲୁପ୍ତ ହେଉ ଅହଙ୍କାର, ନିରାମୟ ହୁଅନ୍ତୁ ପୃଥିବୀବାସୀ :

ହେ ମାତ କାତ୍ୟାୟନୀ—ଆପଣଙ୍କର ଆଗମନର ଅରୁଣାଲୋକରେ ସର୍ବହରାର କୁଟୀର ହେଉ ଆଲୋକିତ; ମୁଠାଏ ଅନ୍ନ, ଖଣ୍ଡିଏ କପଡ଼ାର ବିକଳ ମନ ହେଉ ଦୂରୀଭୂତ; ଅତ୍ୟାଚାରୀର କର କବଳରୁ ସର୍ବହରା ହେଉ ସୁରକ୍ଷିତ :

ହେ ମାତ ଅମ୍ବିକେ—ଆପଣଙ୍କର ଜ୍ୟୋତିର୍ମୟ ପ୍ରଭାରେ ଜଳି ଯାଆନ୍ତୁ ଦୁଷ୍ଟ, ଭ୍ରଷ୍ଟ, ଖଣ୍ଡ, ପାଷାଣ୍ଡ; ଆପଣଙ୍କର ଶାଣିତ କୃପାଣ ଛିନ୍ନ କରୁ ହୀନ ମାନବର ଅତ୍ୟାଚାର, ପ୍ରତିଷ୍ଠିତ ହେଉ ମହାଭାରତର ସୁମହାନ ପରମ୍ପରା; ଶାନ୍ତି, ତୃପ୍ତି, ମୈତ୍ରୀର ଭାବ ଧାରାରେ ପୃଥିବୀବାସୀ ହୁଅନ୍ତୁ ମୁଗ୍ଧ, ପରିବ୍ୟାପ୍ତ ହେଉ ପବିତ୍ରତାର ବାୟୁମଣ୍ଡଳ :

ହେ ମାତ ଭବାନୀ—ଏ ବିଜୟା ଦଶମୀ ଅବସରରେ ଅଜ୍ଞାତର ସକଳ 'ଝଞ୍ଜାକୁ ଛିନ୍ନ କରି ଘନ ତମସାର ଦୃଢ଼ ଆବରଣରୁ ଉନ୍ମେଷିତ ହୋଇ ଆଜ ପାଠକ ପାଠିକାମାନଙ୍କର ହସ୍ତ ସ୍ପର୍ଶର ଗୌରବ ଲାଭ କରିବାରେ ଯେଉଁ ଗୁରୁଜନ ମାନଙ୍କର ଆଶୀର୍ବାଦ ଓ ପ୍ରଚ୍ଛନ୍ନ ପ୍ରେରଣା ବଳରେ ଏକ କଲମ ମୁନର ପାଣ୍ଡୁଲିପି ନୂତନ କଳେବର ଧାରଣ କରି ଜନ ମାନସ ଆଗରେ ଝଲସି ଉଠିଛି, ସେହି ହିତାକାଙ୍କ୍ଷୀ-ଗୁରୁଜନମାନଙ୍କ ଉଦ୍ଦେଶ୍ୟରେ "ଆହତ ଆତ୍ମା" ଉତ୍ସର୍ଗୀକୃତ ହେଲା ।

ଲେଖକ ।

---

କ୍ଷୁଦ୍ର ଗଳ୍ପ : ପୃଷ୍ଠା





# ଏକ ଆହତ ଆତ୍ମା

ଗୋଲାପ,

ତୋର ଅକ୍ଷରର ଗୋଲାପକୁ ବୋଧହୁଏ ପାସୋରି ଯିବୁଣି । ତଥାପି କେଜାଣି କାହିଁକି ମୁଁ ତୋତେ ପାସୋରି ପାରିନି । ମୋର ସ୍ମୃତିରେ ତୋର ଉପସ୍ଥିତି ମୋତେ ଅତୀତରେ ସେଇ ଆବେଗ ଭରା ସ୍ୱପ୍ନ, ଉତ୍ଫୁଲ୍ଲ ଭରା ପ୍ରେମର ଲୀଳା ପ୍ରାନ୍ତରକୁ ଟାଣି ନେଉଛି । ପ୍ରତ୍ୟୁଷ ଓ ପ୍ରଦୋଷର ସେଇ ବିମୋହନ ରମଣୀୟ ଦୃଶ୍ୟରେ ମୋର ସ୍ନାୟୁତନ୍ତ୍ରୀ ଉଜ୍ଜୀବିତ ହୋଇ ବିସ୍ମୃତିର ପୁନରୁତ୍ଥାନ ଘଟାଉଛି ।

ମନେ ପଡୁଛି ଦୁହେଁ ହଜିଯିବା ସେଇ ଶୀତ ବସନ୍ତର ବେଳା ଭୂଇଁରେ । ପ୍ରତ୍ୟେକଟି ସୈକତ ରେଣୁ ଉପରେ ପଦ-ଉତ୍ତୋଳନ କରି ଆଗେଇଯିବା ସେଇ ଶାନ୍ତି କୋଣାର୍କର ମୂର୍ତ୍ତି ପୁଲକିତ ମାଧୁର୍ଯ୍ୟ ପାଇଁ । ନତୁବା ଆଗେଇଯିବା ବିପର୍ଯ୍ୟସ୍ତ ଚନ୍ଦ୍ରଭାଗାର ପ୍ରବଳ ସାନ୍ନିଧ୍ୟ ପାଇଁ । ସେଇଠି ପ୍ରତ୍ୟୁଷର ଅରୁଣ କାନ୍ତିରେ ଜାଳି ଦେବା ଏଇ ରକ୍ତ ମାଂସର ଶରୀର । ଆଜି ପ୍ରଦୋଷର ସ୍ୱର୍ଣ୍ଣାଲୋକରେ ବିଶୋଧିତ କରିବା ଏ ବିଷାକ୍ତ ଜୀବନର ଗ୍ଲାନି । ମହୋଦଧିର ଉତ୍ତୁଙ୍ଗ ଉର୍ମି ଲଂଘନ କରି ଆତ୍ମାରେ ଭରିଦେବା

ତୃପ୍ତି । ସେହି ତୃପ୍ତିର କେତେକ ଅଂଶ ଏ ଧରଣୀରେ ଅବତରଣ କରି ଗଢ଼ିବ ନୂତନ ସଂସାର । ଅବଶ୍ୟ ସମାଜ ତାହା ଶୁଭ ଲକ୍ଷଣ ମନେ କରିବ ନାହିଁ । ତଥାପି ଅଜ୍ଞାତର ସେହି ସ୍ୱର୍ଣ୍ଣବେଳା ଆଜ ଫେରିବ କି ଗୋଲାପ ?

ସ୍ତ୍ରୀ ଜୀବନର ପରିସମାପ୍ତି ଘଟିଛି ସତ, ପୁଣି ଥରେ ସ୍ତ୍ରୀ ହେବାକୁ ମନେ ହେଉଛି । କିନ୍ତୁ ସେ ସୁଯୋଗ ଏତେ ସହଜ ହେବନି ଗୋଲାପ, ଆମେ ପରିବାରର ଗୋଟିଏ ଗୋଟିଏ ବୋଝ । ଆମ୍ଭମାନଙ୍କ ପାଇଁ କେତେ ଚିନ୍ତା, କେତେ ଅନ୍ୱେଷଣ ଏ ବୋଝର ଝଲସରେ ପରିବାର ମଧ୍ୟରେ କେତେ ଆନନ୍ଦ, କେତେ ତୃପ୍ତି । ଆମକୁ ପୁଣି ଦୂରେଇ ଯିବାକୁ ହେବ, ଯେଉଁଠି ଅବଶିଷ୍ଟ ଜୀବନର ମନ୍ଦିର ଗଢ଼ି ଉଠିବ । ଏହି ମନ୍ଦିର ଗଠନ ନହେବାଯାଏଁ ଅସ୍ଥିରତାର କମ୍ପନରେ ପରିବାରର ସମସ୍ତେ ସନ୍ତୁଳ ହେବେ । ଆଜ ଦିନ ଗୋଟାଏ କାଳ ପରି ମନେ ହେବ ।

ଶୁଣିଲେ ବୋଧ ହୁଏ ତୁ ଖୁସି ହେବୁ । ଦିନେ ତୁମର ଗାଁକୁ ମୋତେ ନିମନ୍ତ୍ରଣ କରିଥିଲୁ । ଅନେକ ଅସୁବିଧା ନେଇ ତୋ ଆଗରେ ମୁଁ ଉପସ୍ଥାପିତ କରିଥିଲି । ଆଜ ତୁମର ଗାଁକୁ ଯିବା ହୋଇ ପାରିନଥିଲା । ଅବଶ୍ୟ ତେବେ ଦୁଃଖ କରିଥିଲୁ । କିନ୍ତୁ ଆଜ ମୁଁ ଆଗ୍ରହ କରୁଛି ତୁମ ଗାଁକୁ ଯିବାକୁ ପଡ଼ିବ । କଣ ତୁ ମୋତେ ସ୍ୱାଗତ କରିବୁ ନି ? କଣ ତୁ କମ୍ ଖୁସି ହେବୁ ?

ତୋଠାରେ ମୁଁ ସନ୍ଦେହ ରଖିବାକୁ ଚାହେଁନି ଗୋଲାପ । ତୁମର ଗାଁକୁ ମୁଁ କୁଳବଧୂ ହୋଇ ଯିବାକୁ ପଡ଼ିବ ।

/

ଟେକଲାଭୂମିର ପ୍ରଣବ ଧ୍ୱନି ଓ ଆମ ଦୁହିଁଙ୍କର ହର୍ଷସ୍ଫୀତ ଧ୍ୱନିର ମିଳନରେ ଯେଉଁ ସୁଖ, ଯେଉଁ ତୃପ୍ତି; ସେହି ସୁଖ, ସେହି ତୃପ୍ତିକୁ ଧ୍ୱନିଗୁଞ୍ଜିତ କରିବ । ଏଇ ସୀମିତ ସାଂସାରିକ ପରିସର ମଧ୍ୟରେ । ବୋହୂ ସାଜିବା ପରେ ଯେଉଁ ସାମାଜିକ ସ୍ୱାଧୀନତା ନ୍ୟୂନ ହେବ, ତାହା କଣ ତାଙ୍କର ଓ ତୋର ଉପସ୍ଥିତିରେ ପୂରଣ ହୋଇ ପାରିବ ନାହିଁ ? ସୀମିତ ପୁଷ୍କରିଣୀ ଜଳରେ ବିକଶିତ ପଦ୍ମର ସ୍ୱାଧୀନତା ନ୍ୟୂନ ହୋଇଥାଏ ; ତାହାର ପୂର୍ଣ୍ଣ ପ୍ରଜ୍ୱଳିତ ତପନ ରଶ୍ମି ଓ କଳା ଭଅଁରର ସ୍ପର୍ଶରେ ହସି ଉଠେ ଓ ଅନେକଙ୍କୁ ହସାଏ ।

ତୁ ଜାଣିଥିବୁ ଗୋଲପ, ତୁମ ଗାଁର ମିଶ୍ର ପରିବାରର କଥା । ତାଙ୍କର ଜ୍ୟେଷ୍ଠ ପୁତ୍ର ସହିତ ସମ୍ବନ୍ଧ ସ୍ଥାପନ ପାଇଁ ସ୍ଥିର ହୋଇଛି । ଆଜି ଦୁଇ ମାସ ପରେ ମୁଁ ତୁମ ଗ୍ରାମରେ ପାଦ ପକାଇବି ।

ମିଶ୍ର ପରିବାରକୁ ମୋତେ ସମର୍ପି ଦେଇ ପିତା ମାତା ଖୁସି ହେବେ । ବର ନିର୍ବାଚନରେ ପାରଦର୍ଶିତା ଦେଖାଇବା ମୋ ପିତା ମାତାଙ୍କ ଭାଗ୍ୟରେ ଘଟି ନାହିଁ କିମ୍ବା ସେହି କୁଶଳତା ହାସଲ କରିବାର ଲକ୍ଷ୍ୟ ନାହିଁ । ଯୋଗ୍ୟତା ଦେଖି ପିତାଙ୍କର ମନ ଖୁସି କିନ୍ତୁ ଧନର ଅଭାବ ଥିବା ଯୋଗୁଁ ମାତାଙ୍କ ମନ ବ୍ୟଥିତ । ସେ ଏଯାଏଁ ରାଜି ନୁହଁନ୍ତି । ତଥାପି ପିତା ଏଥିପାଇଁ ଶ୍ରେଷ୍ଠ ଭୂମିକା ଗ୍ରହଣ କରି ପ୍ରାଥମିକ କାର୍ଯ୍ୟମାନ ଆରମ୍ଭ କରି ଦେଲେଣି ।

ଭାଗ୍ୟରେ କଣ ଅଛି କେଜାଣି, କିନ୍ତୁ ଗୋପାଳ ତୁ ତାଙ୍କରି ବିଷୟରେ ଲେଖିବୁ ! ସେହି ପରିବାରର ଚାଲିଚଳଣି, ଗୁଣଗରିମା ଗୁଣାବଳୀ କହିକି ଲେଖିବୁ । ତୋର ସେହି ଗୋପାଳ ପାଇଁ ତୁ କି ପ୍ରକାର ଉପଦେଶ ଦେଇପାରିବୁ ସେଥିପାଇଁ ଉଦ୍‌ଗ୍ରୀବ ଚିତ୍ତରେ ଅପେକ୍ଷା କରି ରହିଲି ।

ଇତି
ତୋର ଆଦରର
ଗୋପାଳ

× × × ×

ଦୁର୍ଦ୍ଦିନର କଳାମେଘ ମଧ୍ୟରେ ସୌଭାଗ୍ୟ ରବିଙ୍କର ଉପସ୍ଥିତି ସମସ୍ତଙ୍କର କାମନା । ଏଥିପାଇଁ କେତେ ଅପେକ୍ଷା, କେତେ ତିତିକ୍ଷା, କେତେ ଆକାଂକ୍ଷା ! କେତେଜଣଙ୍କର ଭାଗ୍ୟରେ ଅପ୍ରତ୍ୟାଶିତ ଭାବେ ଉଦ୍‌ଭାସିତ ହୁଏ ଏଇ ଆଶାର ଅମୂଲ୍ୟ ସମ୍ପତ୍ତି । କିନ୍ତୁ ତାହା ସମସ୍ତେ ଉପଭୋଗ କରି ପାରନ୍ତି ନାହିଁ ।

ମିଶ୍ର ପରିବାରର କଥା ମାନସୀ ମନରେ ସୃଷ୍ଟି କଲା ଚମକ । ପଢ଼ିଲା ଲେଖା ସବୁ ଠାକୁର ଉଠିଲା ।

ବୋଧହୁଏ ରଶ୍ମି ଜାଣିନି—ତା ଗୋପାଳର ପରିବାର ସହିତ ମିଶ୍ର ପରିବାରର ଶତ୍ରୁତା । ଜାଣିଥିଲେ ସେ ମିଶ୍ର ପରିବାରର ବିଷୟରେ ମତାମତ ପାଇଁ ଅନୁରୋଧ କରି ନଥାନ୍ତା ।

ଦ୍ୱିତଳ ପ୍ରାସାଦ ଉପରୁ ସେହି ମିଶ୍ର ପରିବାରକୁ ଆଖି ଫେରାଇ ଦେଖିଲା । ଏହି ପରିବାର ଉପରେ ତାକୁ ମତାମତ

ଘୋଷଣା କରିବାକୁ ହେବ । କଣ ସେ ଲେଖିବ ? ସେ ଦେଖିଲା—ସେଇଠି ମିଶ୍ର କନ୍ୟା ତୁଳସୀ ଦେବୀଙ୍କ ମୂଳେ ଭକ୍ତି ପୂତ ଆରତି ସମର୍ପଣ କରୁଛନ୍ତି, ସେଇଠି ମିଶ୍ର ମୁଖ୍ୟା ଘର ସଜାଡ଼ିବାରେ ତତ୍ପର । ସେଇଠି ଖେଳୁଛନ୍ତି ଅନନ୍ୟ ଆଉ ବନ୍ୟ । ତୁଷାର ଉଜ୍ଜ୍ୱଳ ଶରୀର ସେମାନଙ୍କର । ମୁଖରେ ମିଷ୍ଟ ହାସ । ଶିଷ୍ଟାଚାର କି ଆକର୍ଷଣୀୟ । ନିଜେ ମିଶ୍ର ଶ୍ଳୋକ ଆବୃତ୍ତି କରୁଛନ୍ତି । ଜ୍ୟୋତିର୍ମୟ ଲଲାଟ ଉପରେ ତିଳକର ଚିହ୍ନ ଆହୁରି ମ୍ଳାନ ପଡ଼ନ । ଶୁକ୍ଳ ଉପବୀତ ପବିତ୍ର ସଙ୍କେତ ନେଇ ଉର୍ଦ୍ଧାଂଶରୁ ବାମକୁ ଲମ୍ବି ଯାଇଛି । ଗୁରୁଗମ୍ଭୀର ପ୍ରଣବ ଧ୍ୱନି ସହିତ ଶ୍ଳୋକ ଆବୃତ୍ତିରେ ମିଶ୍ରେ କୁଟୀର ପ୍ରାଙ୍ଗଣରେ ଭରିଦେଉଛନ୍ତି ଶାନ୍ତି, ମୈତ୍ରୀ, ସାଧୁତାର ପ୍ରେରଣା । ସେଇଠି ମଧ୍ୟ ବର୍ତ୍ତମାନ ଜଣେ ନବୀନ ଯୁବକ । ସୁଗମ ଚେହେରା । ପ୍ରସସ୍ତ ବକ୍ଷର ସୁସ୍ପଷ୍ଟ ରୋମରାଜି ଉପରେ ହସ୍ତ ତାଙ୍କର ଚଳଚଞ୍ଚଳ । ଜ୍ୟୋତିର୍ମୟ ଶରୀରର ଚମତ୍କାର ଆକର୍ଷଣରେ କେନ୍ଦ୍ରୀଭୂତ ହେଲା ତାର ସମସ୍ତ ଦୃଷ୍ଟିଶକ୍ତି ସେହି ଯୁବକ ଉପରେ । ଯୁବକ ଜଣକ ଉପଭୋଗ କରୁଛନ୍ତି ଉପବନର ବିକଶିତ ପୁଷ୍ପବୀଥି ଉପରେ ପ୍ରଜାପତିର ନୃତ୍ୟ । ସେଇଠି ମିଶ୍ରଙ୍କର ଧେନୁ ଶିକୁଳି ମୁକ୍ତ । ଦୋଳାୟମାନ ଜହ୍ନର ଶୀତଳ ସ୍ପର୍ଶରେ ବସ୍ରା ତର ପୁଲକିତ । ସତେ ପ୍ରେମ କି ପ୍ରସସ୍ତ ! ସେଇଠି ପ୍ରାଣୀ ଆନନ୍ଦରେ ସଚଳ । ପଶୁ, ପକ୍ଷୀ, କୀଟ, ତରୁଲତା ପରିବାରର ସ୍ନେହରେ ବିହ୍ୱଳ ।

ବିଷାଦ ଶୂନ୍ୟ ସେ ଛଣ ଛପରର ନବାବ ସ୍ଥଳୀ । ଚେହେରାରେ ଗରିବର ସଙ୍କେତ ନାହିଁ । କେବଳ ମିଶ୍ରଙ୍କର ବ୍ୟାଙ୍କ ସହିତ କାରବାର ନାହିଁ । ଉଚ୍ଚ ସୁଧରେ ସ୍ୱପ୍ରତିଷ୍ଠା

ବୃଦ୍ଧିର ସ୍ପୃହା ନାହିଁ । ଶ୍ରମିକର ରକ୍ତରେ କୁତବ ମୀନାର ନିର୍ମାଣ ଯୋଜନା ସୁବିନ୍ୟସ୍ତ ନୁହେଁ । କୁତ୍ସିତ ଉପାୟରେ ପ୍ରତିଷ୍ଠା ଅନ୍ୱେଷୀଙ୍କର ସେ ଅନୁଚର ହୋଇ ନ ପାରନ୍ତି । ନିଜର ପାଣ୍ଡିତ୍ୟରେ ଆଣି ଦେଇଛନ୍ତି ପ୍ରତିଷ୍ଠା । ତେଣୁ ତାଙ୍କର ଅନେକ ପ୍ରତିଦ୍ୱନ୍ଦୀ । କଣ ଲେଖି ରଶ୍ମିର ମାତୃ ହୃଦୟରୁ ସନ୍ଦେହ ଦୂର କରିବ ! ମିଶ୍ରଙ୍କର ଛଣ ଛପର ଘରେ ଯେଉଁ ସୁଖୀ ପରିବାର ଗଠନ-ଶୀଳ ତାକୁ କାହିଁକି ବା ସେ ରୋକିବାକୁ ଚାହିଁବ ? ତେବେ ସେ କଣ ଲେଖିବ ?

ମାନସୀ ମିଶ୍ର ପରିବାରକୁ ପୁଣି ଥରେ ଆଖି ପୁରାଇ ଚାହିଁଲା । କେଜାଣି କାହିଁକି ସେତେ ବେଳକୁ ତାର ନିଶ୍ୱାସ ପ୍ରଶ୍ୱାସ ପ୍ରଖର ହୋଇ ଉଠୁଥିଲା । ରକ୍ତର ସ୍ରୋତ ଯେମିତି ମଥା ଉପରକୁ ଖୁବ୍ ଜୋରରେ ଯାନ୍ତ୍ରିକ ବଳରେ ଉଠୁଥିଲା କାହିଁକି ମାନସୀ ଏମିତି ଅନୁଭବ କଲା ? କଣ ତାଙ୍କ ପରିବାର ସହିତ ମିଶ୍ର ପରିବାରର ଶତ୍ରୁତା ଅଛି ବୋଲି !! ତେବେ କଣ ସେ ଅତିରଞ୍ଜିତ କରି ରଶ୍ମିକୁ ମିଶ୍ର ବଧୂ ହେବାର ସୁଯୋଗରୁ ବଞ୍ଚିତ କରିବ !!! ନା, ରଶ୍ମି ତାର ଅନ୍ତରର ବନ୍ଧୁ । ଏକ ଆତ୍ମା । ପାରିବାରିକ ଅସନ୍ତୋଷ ଯୋଗୁଁ ମିଶ୍ର ପରିବାର ସହିତ ଶତ୍ରୁତା ଅଛି ବୋଲି ସେ ରଶ୍ମିର ସ୍ୱାର୍ଥକୁ କାହିଁକି ଆଘାତ କରିବ ?

ତଥାପି ମାନସୀର ମାନସପଟରେ ମିଶ୍ର ପରିବାରର ସ୍ମୃତି ସୃଷ୍ଟି କରେ ସ୍ନାୟୁବିକ ବେଦନା । ଆଖିରୁ ଝରେ ଉଷ୍ଣ ଲୁହ । ମିଶ୍ର ପରିବାରକୁ ସେ ଖୁବ୍ ଡରେ । ତେବେ ସେ କଣ ଲେଖିବ ?

× × × ×

ଗୋଲାପ,

ତୋର ଶୁଭ ବାର୍ତ୍ତା ପାଇ ଖୁସି ହେଲି । ଆମ ଗାଁର କୁଳବଧୂ ବେଶରେ ତୋତେ ଦର୍ଶନ କଲେ ଏହି ଆତ୍ମା ଆନନ୍ଦରେ ନାଚ ଉଠିବ । ଆଜ ଅଷ୍ଟତର ସ୍ୱପ୍ନ ବାସ୍ତବରେ ପରିଣତ ହେବ ।

ମିଶ୍ର ପରିବାରର କୁଳବଧୂ ହେବା ସୌଭାଗ୍ୟକୁ ତୁ ଏଡ଼ାଇ ଦେବା ଉଚିତ ନୁହେଁ । କମ୍ ଜଣଙ୍କର ଭାଗ୍ୟରେ ଏପରି ସୁଯୋଗ ଯୁଟେ । ଚନ୍ଦ୍ରାଢ଼ୋଳା ତୋର ଘୃତ ପ୍ରଜ୍ୱଳିତ ଦୀପ ଅର୍ଚ୍ଚନାରେ ସମ୍ମୁଗ୍ଧ । ତାଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦରେ ତୋର ଲଲାଟର ଲାଲ ଟହ ଟହ ସିନ୍ଦୂର ବିନ୍ଦୁ ହେବ ସୁଉଜ୍ଜ୍ୱଳ ଓ ସୁଦୀର୍ଘ । ଗଠନଶୀଳ ମନ୍ଦିରର ସ୍ୱପ୍ନ ହେବ ସାର୍ଥକ । କଣ୍ଟକିତ ମାର୍ଗ ହେବ ପୁଷ୍ପାବୃତ୍ତ । ସେଇଠି ତୁ ପାଇବୁ ତୋର ପ୍ରିୟ ଦେବତାଙ୍କୁ । ବିଧର୍ମୀ ସେହି ମନ୍ଦିରକୁ ଧ୍ୱଂସ କରିପାରିବ ନାହିଁ ମହୋଦଧିରେ ଭାସି ଆସିବ ଦାରୁ ବ୍ରହ୍ମ । ସେହି ଦାରୁବ୍ରହ୍ମରୁ ତୁ ପାଇବୁ ପରଂବ୍ରହ୍ମଙ୍କର ଗୌରବ ମୟ ସତ୍ତା ।

ଯୋଗ୍ୟତା ଦୃଷ୍ଟିରୁ ପରିବାରଟି ଖୁବ୍ ଉନ୍ନତ ଏବଂ ତୁମ ପିତାଙ୍କର ବଚୁର ନିର୍ଭୁଲ । ସମ୍ପତ୍ତି କଥା ନେଇ ତୁମ ମାତାଙ୍କ ମନରେ ଯେଉଁ ସନ୍ଦେହ ଉପୁଜୁଛି ତାହା ଠିକ୍ ନୁହେଁ । ସମ୍ପତ୍ତିର କେହି ସ୍ଥାୟୀ ମାଲିକ ନୁହଁନ୍ତି । ତୋ ଭଳି ନାରୀ ରତ୍ନରେ ମିଶ୍ର ପରିବାର ବିଭୂଷିତ ହେଲେ ଆଉ ସମ୍ପତ୍ତିର ଆବଶ୍ୟକତା କଣ ? ଏହି ସମ୍ପତ୍ତି ଆଜି ଅଜସ୍ର କନ୍ୟାଙ୍କ ସ୍ୱର୍ଣ୍ଣ ମନ୍ଦିରକୁ ଧ୍ୱଂସ କରୁଛି । ତୁ ତ ଦିନେ ଜିଦ୍ ଧରି କହୁଥିଲୁ—

ମୂର୍ଖଙ୍କର ସମ୍ପତ୍ତି କେବଳ ସମ୍ବଳ ଯୋଗାଡ଼ିଲେ ଅନ୍ୟ ମାନଙ୍କ ପକ୍ଷରେ ସଂପତ୍ତି ଦୁଃଖର କାରଣ । ଆଶା କରେ ମାତା ତୁମର ଏହି ଜଦ୍‌ରୁ କ୍ଷାନ୍ତ ହେବେ ।

ଯୁବକ ଜଣକ ସୁଶିକ୍ଷିତ । ଗତ ବର୍ଷ ଠାରୁ ଅନୁଗୁଳ ସହରରେ ସେ ସହକାରୀ ସର୍ଜନ ଭାବେ ନିଯୁକ୍ତି ପାଇଛନ୍ତି । ଗଠନ ଠିକ୍ ଦେବ ପ୍ରତିମା । ବର୍ଣ୍ଣ ଗୌର । ଶକ୍ତିଶାଳୀ ଚେହେରା । ମିଷ୍ଟଭାଷୀ । ଶିଷ୍ଟାଚାର ଅତି ଉତ୍ତମ । ସୁଶ୍ରାବ୍ୟ ବ୍ୟବହାର ଓ ସାହାଯ୍ୟ ମନୋବୃତ୍ତି ଯୋଗୁଁ ଏ ମୁଲକ ଦେଇଛନ୍ତି ଉଚ୍ଚତମ ସ୍ଥାନ । ଦାମ୍ଭିକ ଅଥଚ ଗର୍ବୀ ନୁହଁନ୍ତି । ବାଲ୍ୟ-କାଳରୁ ଅଦ୍ୟାବଧି ନିରାଡ଼ମ୍ବର ଜୀବନ ଯାପନକୁ ଏଠାରେ ସମସ୍ତେ ପ୍ରଶଂସା କରନ୍ତି । ସାଧୁ ଓ ସତ୍ୟବାଦୀ ଯୋଗୁଁ ସେ ଆବାଳବୃଦ୍ଧବନିତାଙ୍କର ଅଦ୍ଭୁତ ମିତ୍ର ବାବୁ ଅଟନ୍ତି । ତାଙ୍କର ସୁକୃତ ପାଇଁ ଗୁରୁଜନମାନେ ତାଙ୍କର ଦୀର୍ଘ ଜୀବନ କାମନା କରନ୍ତି ।

ପରିବାରରେ ଅଶାନ୍ତିର ସଙ୍କେତ ନାହିଁ । ସୁଖୀ ପରି-ବାର ବର୍ତ୍ତମାନ ଗଠନ ଶୀଳ । ଦୀର୍ଘ ଦିନର ଦାରିଦ୍ର୍ୟ ବର୍ତ୍ତମାନ ଅପସୃୟମାନ । ସେଇଠି ବିଳାସର ପ୍ରାଚୁର୍ଯ୍ୟ ନାହିଁ, ଅଛି ଶ୍ରମର ସାର୍ଥକତା । ସେଇଠି ଉତ୍ତୁଙ୍ଗ ହର୍ମ୍ୟର ନୁପ୍ରଭାବ ନାହିଁ, ଅଛି କୁଟୀରର ସାରଲ୍ୟତା । ସେଇଠି ସହରୀ ସଭ୍ୟତାର କୁଟିଳତା ନାହିଁ, ଅଛି ପଲ୍ଲୀର ପଲ୍ଲବିତ ପ୍ରାକୃତିକତା । ଗର୍ବ ନାହିଁ ଅଛି ବିନମ୍ରତା ।

ଏ ସୁଯୋଗ ଏଡ଼ାଇବା ବୋକାମିର ପରିଚୟ ହେବ ଚିନ୍ତା ମୋର କ୍ଷୁଦ୍ର ହୃଦୟରେ ବିସ୍ତାର କରେ । ତେଣୁ

ଅବଶିଷ୍ଟ ତୋର ବସ୍ତୁର ପାଇଁ ଗ୍ରହଁଦେଲି । ମିଶ୍ର ପରିବାରର କୁଳବଧୂ ହେବାର ସୁଯୋଗ ହରାଇବୁ ନାହିଁ ହେ'ଲା ମୋର ଆଶା ।

ତୋର ଭାଗ୍ୟରେ ମୁଁ ଖୁବ୍ ଆନନ୍ଦିତ । ତୋର ତୃପ୍ତିରେ ମୁଁ ସୁଖୀ ।

ଇତି

ତୋର

ଗୋଲାପ

× × × ×

ଉଚ୍ଛ୍ୱସିତ ଆଡମ୍ବର ଭିତରେ ଉତ୍ସବର ପରିସମାପ୍ତି ଘଟିଛି । ରଶ୍ମି ମିଶ୍ର ପରିବାରର କୁଳବଧୂ ହେବାର ଅଧିକାର ପାଇଛି । ସେ ହୋଇଛି ସ୍ୱାମୀ ଅନୁରକ୍ତ । ପୁଣି ଗୁରୁଜନ ଭକ୍ତା । ସେବାରେ ନିଜକୁ ନିୟୋଜିତ କରିଛି ସେ । ସହ୍ୟ କରିଛି ଆଷାଢ଼ର ଝଡ଼ ଆଉ ବୈଶାଖର ଝାଞ୍ଜି । ପର୍ଯ୍ୟାପ୍ତ-ସଂଯମ ସେ ପ୍ରମାଣିତ କରିଛି ନାଶ୍ମି ହୋଇଛି ଉତ୍ତମ ସେବା ଓ ସନ୍ତୋଷର ସ୍ୱୀକୃତି । ଯେଉଁଠି ନାରୀତ୍ୱର ବିକାଶ ରହିଛି, ସେଇଠି ଅହଂକାର ନାହିଁ, ଶିକ୍ଷାଭିମାନ ନାହିଁ, ରହିଛି ଶିଷ୍ଟାଚାର ଓ ନମ୍ରତା । ତାର ଆଦରର ବନ୍ଧନ, ମିଷ୍ଟସମ୍ଭାଷଣ, ଅନାବିଳ ପ୍ରେମ ମିଶ୍ର ପରିବାରର ପ୍ରତି ଅଣୁ ପରମାଣୁକୁ ଆକର୍ଷଣ କରିଛି । ସେହି ସୁରକାନ୍ତ ଘରରେ ରହି ସେ ମାନସୀକୁ ଖୋଜି ବୁଲୁଛି । ମନରେ ଅସରନ୍ତି ଭାବନା ଉଠୁଛି । କାହିଁ କେତେଦିନ ଅତୀତ ହେଲାଣି ମାନସୀର

ଦର୍ଶନ ନାହିଁ । କଣ କେଉଁଠାକୁ ବୁଲି ଯାଇଛି ? ମନରେ ଅନେକ ପ୍ରଶ୍ନ ଉଠୁଛି । ପୁଣି ଧମସ୍ତ ସ୍ରୋତରେ ଓ ଗୃହ କଞ୍ଜାଳର କବଳରେ ଭାବନା ଗୁଡ଼ିକ ପୁଣି ଶିଥିଳ ହୋଇ ଯାଉଛି ।

× × × ×

ଅପ୍ରତ୍ୟାଶିତ ଭାବେ ସେଦିନ ମାନସୀ ସହିତ ସାକ୍ଷାତ ହେଲା । କିନ୍ତୁ ଭିନ୍ନ ଅବସ୍ଥାରେ । ମାନସୀ ଦ୍ରୁତ ଗତିରେ ଫେରୁଛି । ଚକ୍ଷୁରୁ ତାର ଲୋତକ ବହି ଯାଉଛି । ମୁଖ ମଣ୍ଡଳ ତାର ଅସ୍ୱାଭାବିକ ଭାବରେ ନାଲି ପାଲଟି ଯାଇଛି । ବୁକୁରେ ତାର କୋହ ସ୍ପଷ୍ଟ ବାରି ହେଉଛି । ଉନ୍ମୁକ୍ତ କେଶ ରାଶି ଯେମିତି ତାକୁ ଅଟ୍ଟହାସ୍ୟ କରୁଛି । କେତେ ଦିନ ତଳର ପୀଠ୍ସ ସ୍ମିତ ମାନସୀ ଆଜ ମ୍ଳାନ ଓ ସଙ୍କୋଚିତ ଦିଶୁଛି । ରଶ୍ମି ତାର ସେହି ପୁରାତନ କଣ୍ଠରେ ଆଦରରେ ଡାକିଲି ମାନସୀ ! ମାନସୀର ପାଦ ଦୁଇଟା ହଠାତ୍ ଅଟକିଗଲା । କିନ୍ତୁ ତା ଶରୀରରେ ତଥାପି ଗତି ପରିକ୍ଷିତ ହେଉଥିଲା । ଅନେକ ଦିନ ତଳୁ ମାନସୀ ମୋତେ ଦେଖି ନ ଥିଲା । ମୋତେ ନିରୀକ୍ଷଣ କଲା ପାଦରୁ ମୁଣ୍ଡ ଯାଏଁ । ଭାବିଥିଲି ମାନସୀ ମୋତେ ଆନନ୍ଦରେ ବିହ୍ୱଳିତ ହୋଇ କୁଣ୍ଢେଇ ପକାଇବ । କେଜାଣି କାହିଁକି କେବଳ ନୀରବ ଜଳ ବର୍ଷଣ କଲା । ମୁହଁଟା ତାର ପଛକୁ ଘୁରାଇ ନେଇ ବକୁଳରେ ବିଳାପ କଲା । ମାନସୀର ଲୋତକାକୁଳ ଚକ୍ଷୁ ମୋ ଆଖିରେ ଭରି ଦେଲା ଅଶ୍ରୁ । ଏ ବିଷାଦର ବାତ୍ୟା ମୋର ମାନସ ପେଟରେ ସୃଷ୍ଟି କଲା ପ୍ରବଳ ଆନ୍ଦୋଳନ । ମାନସୀକୁ ସାନ୍ତ୍ୱନା ଦେଇ ତାର ମୁହଁରୁ ଲୋତକ ଅପସାରଣ ପାଇଁ ଉଦ୍ୟମ କଲି । ମୋର ପଣନ୍ତ ଧରି ତାର ଆଡ଼କୁ ପାଖେଇ ଆସିଲି । ପୁଚ୍ଛୁଥିଲି ତାହାଠାରୁ ସବୁ ବୁଝି

ନେବ । କିନ୍ତୁ, କିନ୍ତୁ—ମାନସୀ ଆଜି ବନ୍ଧେ ମଧ୍ୟ ସେଠାରେ ରହିଲା ନାହିଁ । ପଶ୍ଚାତ୍ କାଳ ମୋର ହସ୍ତଚ୍ୟୁତ ହେଲା । ମୁଁ ପ୍ରସ୍ତରୀଭୂତ ହୋଇ ଗୃହିଁ ରହିଲି । ପାଗଳୀଙ୍କ ଭଳି ଅପରଦର ଚାଲି । ପାଦ ଦୁଇଟି ତାର ଏତେ ଚଞ୍ଚଳ ହୋଇଯାଏ, ସେ ଦିନ ପ୍ରଥମ ଥର ପାଇଁ ଦେଖିଲି । ଶୀଘ୍ର ମୋର ଦୃଷ୍ଟି ଟଙ୍କର ବାହାରକୁ ଗ୍ଲଲଗଲା । ମୋର ଚୁଲବାକ୍ ଶକ୍ତିକୁ ସଞ୍ଜୀବିତ କରି ମୋ ପାଖକୁ ଫେରି ଆସିବା ପାଇଁ ଆହ୍ୱାନ କଲି । କିନ୍ତୁ ସେ ଅହ୍ୱାନ ପ୍ରତି କର୍ଣ୍ଣପାତ ନକରି ସେ ଉଭେଇ ଗଲା । ଶୀଘ୍ର ଅନ୍ତର୍ଦ୍ଧାନ ହେଲା ।

ମାନସ ପଟରେ ମୋର ଆନ୍ଦୋଳନ ଗ୍ଲଲୁ ରହିଲା । ଏଇ ମାନସୀ ମୋର କଣ ନୁହେଁ ? କଲେଜ ଜୀବନରୁ କେତେ ଘନିଷ୍ଟ ? ଏହି ଅଳ୍ପଦିନ ତଳର ତାର ଆଦରର ଶର୍ତ୍ତ କି ସ୍ପୃହଣୀୟ ? ଆଜ କାହିଁକି ତାର ଏ ପରିବର୍ତ୍ତନ ? ଧନର ତ ଅଭାବ ନାହିଁ ? ଗ୍ଲହୁଁ ଥିଲେ ପିତାମାତା ତାର, ଧନାଢ଼୍ୟ ପରିବାରରୁ ବର ଖୋଜିଦେଇ ପାରନ୍ତେ ? କିନ୍ତୁ ଅଲଅଳି କନ୍ୟାର ଏହି ପରିବର୍ତ୍ତନ କାହିଁକି ?

ରଶ୍ମି ଦେବୀ ସଜଳ ନୟନେ ଆଗେଇ ଗ୍ଲଲିଲେ । ଅଶ୍ରୁ ଅପସାରଣ କରୁ କରୁ ଚପରାସୀ ଆସି ହାତରୁ ଛତା ଆଉ ବ୍ୟାଗଟି ନେଇ ଅଫିସରେ ରଖି ଦେଲା । ସେ ମଧ୍ୟ ଅଫିସ ମଧ୍ୟରେ ପ୍ରବେଶ କଲେ । ଆନ୍ଦୋଳିତ ମନରେ ପ୍ରଶ୍ନ କଲେ— କିନ୍ତୁ, ସେହି ସ୍ତ୍ରୀ ଲୋକଟି ଏଠାକୁ କାହିଁକି ଆସିଥିଲା ?

ଶଙ୍କାପୂର୍ଣ୍ଣ କଣ୍ଠରେ ନରୁ ଉତ୍ତର ଦେଲା—ଜାଣିନ ଦିଦି ମୁଁ ମଧ୍ୟ ଆପଣଙ୍କ ପରି ନୂଆ । ପରିଚୟ ମଧ୍ୟ ଜାଣେନା । କିନ୍ତୁ

ଦେଖିଥିଲି '୩' ନମ୍ବର ୱାର୍ଡ଼ର ନର୍ସଟିଏ ଶିଶୁକୁ କୋଳକରି ଆଲିଙ୍ଗନ କରୁଥିଲା । ତାର ମୁଖମଣ୍ଡଳକୁ ବାରମ୍ବାର ଅବଲୋକନ କରୁଥିଲା । ମୁଖମଣ୍ଡଳରେ ବିଷାଦର ଲକ୍ଷଣ ଥିଲେ ମଧ୍ୟ ଶିଶୁଟିର ଚନ୍ଦ୍ର ବଦନରେ ଚୁମା ଲଦିଦେଇ ଆତ୍ମତୃପ୍ତି ଅନୁଭବ କରୁଥିଲା । ଶି· ନର୍ସିକାର ଚିତ୍ତରେ ସେହି ମହିଳାର ମୁଖମଣ୍ଡଳରେ ନିରୀକ୍ଷଣ କରୁଥିଲା । ଅନ୍ୟ ଶିଶୁମାନେ ମଧ୍ୟ ତାଙ୍କୁ ଅପଲକ ନୟନରେ ନିରୀକ୍ଷଣ କରୁଥିଲେ । ପିଲାମାନଙ୍କୁ କେତେ କଣ ଖାଇବାକୁ ଦେଉଥିଲା । ଗବାକ୍ଷ ଫାଙ୍କରେ ଏ ସବୁ ମୋର ଦୃଷ୍ଟିଗୋଚର ହେଲା । ସେହି କୋଠରୀ ଯାଞ୍ଚ କରିବାକୁ ପ୍ରବେଶ କଲାବେଳେ ମୋତେ ସେ ପ୍ରଶ୍ନ କଲେ—ବର୍ତ୍ତମାନ ପ୍ରଧାନ ଶିକ୍ଷୟିତ୍ରୀ କିଏ ଅଛନ୍ତି ? ମୁଁ ଉତ୍ତର ଦେବାକୁ ଯାଇ କହିଲି—ବର୍ତ୍ତମାନ ରଶ୍ମି ମିଶ୍ର ଏଠାରେ ପ୍ରଧାନ ଶିକ୍ଷୟିତ୍ରୀ ଅଛନ୍ତି । ସେ କେତେଟାରେ ଆସିବେ ? ପୁଣି ପ୍ରଶ୍ନ କଲା ସେହି ମହିଳା ଜଣକ । ମନେ ହେଉଥିଲା ଅପେକ୍ଷା କରିବାରେ ସେ ମୋତେ ଏ ପ୍ରଶ୍ନ କରୁଛନ୍ତି । ନୋହିଲେ ତାଙ୍କର ମୁଖମଣ୍ଡଳରେ ଆତଙ୍କ ଓ ନୈରାଶ୍ୟର ଧୂସର ମେଘ ଘୋଟି ରହିଥିଲା । ପ୍ରଶ୍ନ କରୁ କରୁ ତାଙ୍କର ଆଖି ସଜଳ ହୋଇ ଉଠିବାର ଲକ୍ଷ୍ୟ କରିଥିଲି । ତାପରେ ସେହି ଝିଅଟିକୁ ଚୁମା ଦେଇ ବାହାରକୁ ଚାଲିଗଲା ।

ରଶ୍ମି ଦେବୀଙ୍କର ସନ୍ଦେହ ଆହୁରି ଘନୀଭୂତ ହେବାକୁ ଲାଗିଲା । ଅଫିସର ନଥିପତ୍ର ସବୁ ଓଲଟାଇ ଦେଖିଲେ—୩ ନମ୍ବର ଓ୍ୱାର୍ଡ଼ର ୧୫ ନମ୍ବର ଶିଶୁଟି ମାନସୀର ରକ୍ତଜ ସନ୍ତାନ । କିନ୍ତୁ ପିତାଙ୍କର ନାମ ଉଲ୍ଲେଖ କରିବାକୁ ମାନସୀ ମନା କରିଦେଇଛି । ଦୁଇ ବର୍ଷ ତଳର କଥା ।

ରଶ୍ମି ଦେବୀଙ୍କୁ ବିଚିତ୍ର ଶଙ୍କା ଗ୍ରାସ କଲା । ମାନସୀର ଔଦାର୍ଯ୍ୟ ପୂରେ ହେଲେ ମର୍ମାହତ । ମାନସୀ କଲେଜ ଜୀବନରେ ଏତେ ଦୂର ଆଗେଇ ଯିବ ତାଙ୍କର ଧାରଣା ନଥିଲା । ତାର ତରୁଣ ଗତ ଦୁର୍ବଳତା ନଥିବା କଥା ସେ ଜାଣନ୍ତି । ମାନସୀ ଏକ ଥର ଭକ୍ତା କଥାକୁ ସବୁବେଳେ ସ୍ୱୀକାର କରୁଥିଲା । ଆଜି କାହିଁକି ତାକୁ ଏ ଝୁଞ୍ଜାରେ ଗଣ୍ଡ କରିବାକୁ ପଡ଼ୁଛି ?

ଏ ସରଳ ତରୁଣୀର ଜୀବନରେ ଗ୍ଲାନିର ବୀଜବପନ କରି କଏ ହେବ ସ୍ୱର୍ଗ ଜୟୀ, ଆଉ ମାନସୀ ହେବ ରସାତଳ ଗାମୀ ! ହାୟ, ତରୁଣୀ ଜୀବନକୁ ନିଷ୍ଠୁର ଭାବରେ ତଳ ତଳ କରିଦେବା ବୁଭୁକ୍ଷିତ ଆଖି ଆଗରେ ମାନସୀ କପରି ଆତ୍ମ ସମର୍ପଣ କଲା ? ତାର କୌଳୀନ୍ୟ ପ୍ରକୃତ୍ତିକୁ କପରି ଧୂଳିସାତ୍ କଲା ? ବିସ୍ମିତ ହେଲେ ରଶ୍ମିଦେବୀ ।

ମାନସୀର ଶିଶୁ ପୁତ୍ରକୁ ଦେଖିବା ପାଇଁ ଆକାଂକ୍ଷା ବଢ଼ିଲା ତାଙ୍କର । ପିଲାଟିକୁ ଦେଖି ଦେଖି ମନେ ହେଲା ଯେମିତି ଅଣ୍ଟାରେ ଏହି ଶିଶୁଟିକୁ କେଉଁଠାରେ ଦେଖିଛନ୍ତି । କିନ୍ତୁ କେଉଁଠାରେ ଓ କେତେବେଳେ ଧାରଣା କରିପାରିଲେ ନାହିଁ । ଏହି ସନ୍ଦେହ ବୁକୁରୁ ମାନସୀକୁ ଖୋଜ ବାହାର କରିବାକୁ ଧରି ବସିଲେ ସେ । ଶିଶୁଟିକୁ କୋଳକୁ ଆଣି ରଶ୍ମିଦେବୀ ଖୁବ୍ ଖୁସି ହେଲେ । ଶିଶୁଟିର କୋମଳ ଅଙ୍ଗ ସ୍ପର୍ଶ ରଶ୍ମିଦେବୀଙ୍କ ମନରେ ଭରି ଦେଉଥିଲା । ମାତୃତ୍ୱର ନବ ପ୍ରେରଣା । ମନେ ମନେ ଭାବିବାକୁ ଲାଗିଲେ—ଯେଉଁ ଶିଶୁ ଜଣେ ନାରୀକୁ ଦେଇ ପାରେ ଅସରନ୍ତ ତୃପ୍ତି । ସେହି ଶିଶୁ ନିଜର ମମତାମୟୀ ମାତାକୁ

କଣ ଦେଇ ନ ପାରେ ? ମାନସୀ ଏପରି ଶିଶୁକୁ କୋଳାନ୍ତର କରି ପ୍ରକୃତରେ ଭାଗ୍ୟହୀନା । ସୌଭାଗ୍ୟର ଗନ୍ଧାଘରେ ଗ୍ଲାନିର ଆବର୍ତ୍ତରେ ବ୍ୟଥିତ ହେଲେ ରହିଦେବ ।

× × × ×

ଅବିରତ ଅଶ୍ରୁଧାର ବହି ଚାଲିଛି । ହୃତ୍‌ପିଣ୍ଡର ସ୍ପନ୍ଦନ ଗତି ମଧ୍ୟ ଉଦ୍‌ବେଗ ଜନକ ଭାବରେ ବୃଦ୍ଧି ପାଉଛି । ଅଶ୍ରୁତ ଉପରେ ମନ୍ତବ୍ୟ ପ୍ରକାଶ କରୁଛି —ଇସ୍, ମୁଁ କଣ ନ କରୁଛି ! କେଉଁ ପରିବାର, କେଉଁ ସମାଜ ଏହାକୁ ଗ୍ରହଣ କରିବ ? ଶେଷରେ ରଶ୍ମି ମଧ୍ୟ ତାର ଶିଶୁକୁ ଅବୈଧ ବୋଲି କହିବ । ଜୀବନର ଗତିଧାରା ଏମିତି କାହିଁକି ବିମୁଖ ହୋଇଗଲା ? ସେ ମୂର୍ଖ ନୁହେଁ. ଉଚ୍ଚ ଶିକ୍ଷିତା ସମସ୍ତେ ତାର ଶିକ୍ଷିତ ପଣିଆକୁ ଧିକ୍ ଧିକ୍ କହିବେ । ଯେଉଁ ପିତା ମାତା ତାକୁ ଜନ୍ମ ଦେଇ ସେହ୍ନରେ ବଢ଼ାଇଛନ୍ତି ସେମାନେ ମଧ୍ୟ କହିବେ କଳଙ୍କିନୀ, କୌଳିନ୍ୟ ଭ୍ରଷ୍ଟାଚାରିଣୀ । ରଶ୍ମି କହିବ କଳଙ୍କିନୀ, ହେଲେ ଯେଉଁ ପରିବାର ତାକୁ ସାଦରରେ ଗ୍ରହଣ କରିଥାନ୍ତା, ସେ ପରିବାର ଘୋଷଣା କରିବ କାଳ ସର୍ପିଣୀ, ଆଉ ବାଟପଣ । ଆଉ ଯେ ଏଥିରେ ଅଂଶିଦାର ସେ କହିବେ ହତଭାଗିନୀ । ଏ ମହାପାପର ପ୍ରାୟଶ୍ଚିତ ନାହିଁ । ଇସ୍...ଜୀବନଟା କି କୁହେଳିକାମୟ ! ସୃଷ୍ଟିଟା କି ବିଚିତ୍ର ! ! ରଙ୍ଗମଞ୍ଚରେ ତାର ଭୂମିକା କି ଅଟ୍ଟହାସ୍ୟ ପୂର୍ଣ୍ଣ ! ! !

ତାର ଶରୀରରେ ଆରମ୍ଭ ହୋଇଗଲା ସ୍ନାୟବିକ ଯୁଦ୍ଧ । ମାନସୀ ନିଜକୁ ଦୁର୍ବଳ ମନେକଲା । ଅପେକ୍ଷା ପାଇଁ ଆଉ ସମୟ ମଧ୍ୟ ରହୁ ନଥିଲା । ଅପେକ୍ଷା କରି ଶରୀରକୁ ଢଳଢଳ କରିବାର

ଧୈର୍ଯ୍ୟ ମଧ୍ୟ ନଥିଲା । ଚକ୍ଷୁ ତନ୍ତ୍ରୀ ସବୁ ଛିନ୍ନ ହେବାର ଦୃଷ୍ଟିଶକ୍ତି ବିଲୁପ୍ତ ହେଲା । ଶରୀରର ତାପ ମଧ୍ୟ ଅସ୍ୱାଭାବିକ ଭାବେ ବଢ଼ି ଯାଉଥିଲା । ଚିତଳ ପ୍ରାସାଦର ଆଉ ଗୋଟିଏ ପାହାଚକୁ ଅତି-କ୍ରମ କରିବାକୁ ହେଲା ଅସମର୍ଥ । ଭୂତଳଗାମୀ ହେଲା ମାନସୀ । କ୍ଷତବିକ୍ଷତ ହେଲା ଅଙ୍ଗ ପ୍ରତ୍ୟଙ୍ଗ । ଲୁପ୍ତହେଲା ବାକ୍ ଶକ୍ତି ।

ସମସ୍ତେ ସମବେତ ହେଲେ । ରକ୍ତାକ୍ତ ଶରୀରକୁ ଯତ୍ନରେ ତୋଳିଲେ । ଆହତ ଆତ୍ମାଟି ପ୍ରେରିତ ହେଲା ଚିକିତ୍ସାଳୟ ପ୍ରାଙ୍ଗ-ଣକୁ । ଉଦ୍‌ବିଗ୍ନ ପିତା ମାତାଙ୍କର ଚକ୍ଷୁ ହେଲା ଲୋତକାକୁଳ । କଣ୍ଠରେ କ୍ଷୀଣ କ୍ରନ୍ଦନ ଧ୍ୱନି ଓ ମାନସ ପଟରେ ଆବେଗ । ଅଳି-ଅଳି କନ୍ୟାର ଶୋଚନୀୟ ଅବସ୍ଥାରେ ପିତାମାତା ହେଲେ ମୂର୍ଚ୍ଛିତ ।

ଚିକିତ୍ସାର ସୁବ୍ୟବସ୍ଥା କରାଗଲା । କିନ୍ତୁ ଆଶାଜନକ ଉନ୍ନତି ଘଟୁ ନଥିଲା । ଯଥେଷ୍ଟ ଔଷଧର ଅନ୍ତର୍ନିକ୍ଷେପଣ ପରେ ମାନ-ସୀର ଚକ୍ଷୁ ଖୋଲିଲା । କିନ୍ତୁ ଭୀଷଣ ଯନ୍ତ୍ରଣାର ଶିକାର ହୋଇ ମାନସୀ ଆଉ ପାଟି ଫିଟାଇ ପାରୁ ନଥିଲା । ତାର ଚତୁଃପାର୍ଶ୍ୱରେ ପିତା ମାତା ଓ ଆତ୍ମୀୟସ୍ୱଜନଙ୍କୁ ଦେଖି କେବଳ ଅଶ୍ରୁମୋଚନ କରୁଥିଲା । ହାତରେ ଇଙ୍ଗିତ ପ୍ରକାଶ କରିବାକୁ ତାର ମାଂସ-ପେଶୀ ଦୁର୍ବଳ ହୋଇ ପଡ଼ିଥିଲେ । ଅସ୍ଥିଧାରୀ ଡାକ୍ତରବାବୁଙ୍କୁ ଦେଖି ମାନସୀ ଆତୁର କାନ୍ଦିବାକୁ ଲାଗିଲା । ନିଜେ ଡାକ୍ତରବାବୁ ଆହତ ନାରୀର ଯନ୍ତ୍ରଣା ସହ୍ୟ କରି ନ ପାରି ଗୃହକୁ ଫେରିଗଲେ ।

ମାନସୀର ସୁନିଦ୍ରା ଆଜି ରାତିରେ ସମସ୍ତଙ୍କ ପାଇଁ ଆଣି ଦେଇଛି ବିଶ୍ରାମ । ମର୍ମାନ୍ତକ ଯନ୍ତ୍ରଣା ତାକୁ ଅତୀତକୁ ନେଇ

ଯାଇଛି । ମାନସ ପଟରେ ତାର ଅତୀତ ପୁଣି ଦେଖାଯାଉଛି । ଛିନ୍ନ ସ୍ମୃତି ସବୁ ଏକତ୍ରୀ ହୋଇ ବର୍ତ୍ତମାନ ଅତୀତକୁ ଉଦ୍‌ଗୀର୍ଣ୍ଣ କରୁଛି ।

ସେଦିନ ମାନସୀ ଦେହରୁ ଶସ୍ତା ପୋଷାକ ଓହ୍ଲାଇ ଦେଇଥିଲା । ଗାଢ଼ନୀଳ କନ୍ୟାପର ଶାଢ଼ୀ ପରିଧାନ କରି ଫେରୁଥିଲା ଦୁଷ୍କରଣରୁ । ତାର ସରୁଆ ବାହୁ ବନ୍ଧନରେ ଥିଲା ପାଣି କଳସ । ଛନ୍ଦମୟ ଗତିରେ ସେ ଆଗେଇ ଆସୁଥିଲା ନିଜର ନିବାସ ସ୍ଥଳୀ ଆଡ଼କୁ । ହଠାତ୍ ଜଣେ ଯୁବକର ଆବିର୍ଭାବ ଦେଖି ଚମକି ପଡ଼ିଲା ମାନସୀ । ଚକ୍ଷୁ ସହିତ ଚକ୍ଷୁର ମିଳନ ହୋଇଥିଲା ସେଇଠି । କମ୍ପମାନ ହୋଇ ଉଠିଥିଲା ତାର ବକ୍ଷପେଶୀ । ପୁଣି ସେ କମ୍ପନ ହେଲା କେତେକ ସମୟ ସ୍ଥାୟୀ ମାନସୀ ଲଜ୍ଜାରେ ମୁହଁକୁ ତଳକୁ କରିଦେଇ ଥିଲା । ସେ ନିଜର ଛନ୍ଦମୟ ଗତି, ପାହାଡ଼ିଆ କବରୀ, ପ୍ରଲେପିତ ମୁଖଶ୍ରୀ ଆଉ ପତଳା ପାଦଉପରେ ନୂପୁରର ରୁଣୁଝୁଣୁ ଧ୍ୱନିର ଐକତାନ ଉପରେ ଅସନ୍ତୁଷ୍ଟ ମନ୍ତବ୍ୟ ପ୍ରକାଶ କରି ସଙ୍କୋଚ ଅନୁଭବ କଲା । ଏ ଦୃଶ୍ୟକୁ ଉପଭୋଗ କରି ଅନେକ ହସୁଥିଲେ । ସାଙ୍ଗଜନମାନେ ଥଟ୍ଟା କରୁଥିଲେ । ତଥାପି ତାର ଭୟ ନଥିଲା । ସେ ତାର ଜଣେ ଅନ୍ତରର ବନ୍ଧୁ ହେବେ । ପିତାମାତା ତାର ଜବାବ ଦେଇଛନ୍ତି । ଏଥିରେ ଆଉ କାହାର ଆପତ୍ତି ରହିବ ।

ସେଦିନର ସାନ୍ଧ୍ୟଭୋଜର ଆୟୋଜନରେ ମାନସୀ ଗ୍ରହଣ କରିଥିଲା ଶ୍ରେଷ୍ଠ ଭୂମିକା । ରୋଷେଇ ଶାଳରେ ପ୍ରବେଶ କରିବାକୁ ପାଇଥିଲା ପ୍ରବେଶପତ୍ର । ଅଣ୍ଡାଭଜା ଶିଖିଥିଲା ପାକପ୍ରଣାଳୀର ଛତିଆ । ନିଜର ଜ୍ଞାନ ଓ ବିଜ୍ଞାନକୁ ପ୍ରୟୋଗ କରି ପ୍ରସ୍ତୁତ କରିଥିଲା

ଭୋଜନ ସାମଗ୍ରୀ । ସାମଗ୍ରୀ ପ୍ରସ୍ତୁତ ସମୟରେ ସେ ମନେ କରୁ-ଥିଲା ଯେମିତ ମନ୍ଦିରର ଦେବଙ୍କ ପାଇଁ ଭୋଗ ପ୍ରସ୍ତୁତ କରୁଛି । ସେ ଆସିଥିଲେ ତାର ଭାଇ ସାଙ୍ଗରେ । ଭୋଜନ ପର୍ବ ଆରମ୍ଭ ହେଲା । ବୋଉ ତାଙ୍କର ଆଗରେ ମାଛ ତରକାରିର ଅଲଣା କଥା ପକାଇ ଦେଇଥିଲେ । ମାନସୀ ଅଗଣା ପିଣ୍ଡାରେ ରହି ସବୁ ଶୁଣୁଥିଲା । ହସୁଥିଲା । ଆଜି ଏକ ପୁଲକିତ ଆନନ୍ଦ ଲହ-ରୀରେ ଦୋହଲୁଥିଲା । ତାଙ୍କର ପାଖରେ ସେ କପଟ ସମାଲୋଚକ ହେବ ସେଥିପାଇଁ କାନ ପାରି ଅପେକ୍ଷା କରିଥିଲା । କିନ୍ତୁ ଗୋଟିଏ ମୃଦୁ ହାସ୍ୟରେ ସେ ତାଙ୍କର ସମାଲୋଚନା ସମାପ୍ତ କଲେ । ଖୁବ୍ ଖୁସି ହେଲା ମାନସୀ । ତୃପ୍ତ ହେଲେ ପରିବାର ବାସୀ ।

ନବୀନ ଯୁବକର ଦର୍ଶନ, ବିବାହ ଉତ୍ସବ ପୂର୍ବରୁ ଯୁବତୀ ମାନଙ୍କ ପାଇଁ ଯେଉଁ ଉଦ୍ଦିପନା ଆଣେ ସେଦିନ କିନ୍ତୁ ମାନସୀର କାର୍ଯ୍ୟକ୍ରମରେ ତାହା ନଥିଲା । ସେ ପୂର୍ବରୁ ତାଙ୍କୁ ବେଶ୍ ଜାଣେ ।

ସେହିଦିନ ଠାରୁ ତାଙ୍କୁ ଦେଖିଥିଲେ ସେ ମୁଖ ଅବନତ କରି ଲୁଚିଇବାରେ ଚେଷ୍ଟା କରୁଥିଲା । ଅବଶ୍ୟ ତାକୁ ଏହା ଗୋଟିଏ ପ୍ରହସନ ମନେ ହେଉଥିଲା ।

କିନ୍ତୁ କାଳକ୍ରମେ ଲୁଚିବା ସମ୍ଭବ ହେଲାନାହିଁ । କଲେଜରେ ତାକୁ ନାମ ଲେଖାଇବାକୁ ପଡ଼ିଲା । ସେହି ସହରରେ ସେ ପୁଣି ପଢୁଥିଲେ । ସେଇଠି ପ୍ରତି ମୁହୂର୍ତ୍ତରେ ତ ଓଢ଼ଣା ଟାଣିବା ସହଜ ହେଉ ନଥିଲା । ଯୌବନର ପ୍ରଭାବରୁ ମୁକ୍ତ ବା କିଏ ହୋଇ ପାରିବ ? ଉଭୟଙ୍କୁ ଉଭୟର ଆବଶ୍ୟକତା ଅନୁସାରେ

ମିଶିବାକୁ ଚଞ୍ଚଳଥିଲା । ଚାଲିଲା ସମାଧାନ ଉଭୟଙ୍କ ଦ୍ୱାରା ହେଉଥିଲା । ଆଜ ମଧ୍ୟ ହୋଇଥିଲା ହୃଦୟର ଚନ୍ଦ୍ରମୟ । ଯୌବନର ବ୍ୟାକୁଳତା ଉଭୟଙ୍କୁ ଆକର୍ଷଣ କରିଥିଲା । ସେମାନେ ଘୂରୁଁ ଥିଲେ ଚୂଡାନ୍ତରେ ନର ନାରୀର ଉଷ୍ମ ଉତ୍ତାପ । ସେହିଦିନ ଠାରୁ ବେଳାଭୂମି ହେଲା ହାସ୍ୟ କଲ୍ଲୋଳର ରଙ୍ଗ ମଞ୍ଚ । ପ୍ରତ୍ୟୁଷ ଏବଂ ପ୍ରଦୋଷରେ ଅରୁଣ ହେଲେ ରଙ୍ଗମଞ୍ଚର ଲଣ୍ଠନ ଆଲୋକ । ଝୁମୁକ ବଳୟର ଝଙ୍କାର ହେଲା ମଞ୍ଚର ମଧୁର ମୂର୍ଚ୍ଛନା ।

ସେମାନେ ହେଲେ ନାୟକ ଓ ନାୟିକା ।

ବେଳାଭୂମିର କୋମଳ ଶୈକତ ରାଶି ଉପରେ ସହାସ୍ୟ ବଦନରେ ନାୟିକା ହେଲେ ଧାବମାନ । ନାୟିକାଙ୍କୁ ହାତ ମୁଠାରେ ପାଇବା ପାଇଁ ନାୟକ ହେଲେ ତାଙ୍କର ପଶ୍ଚାଦ୍‌ଗାମୀ ଅନାୟାସରେ ନାୟକର ପ୍ରସାରିତ ହସ୍ତରେ ଧରାପଡ଼ିଲା ନାୟିକାର ଉଡ଼ନ୍ତ ପ୍ରାନ୍ତ । ଧୃତ ନାୟିକାର ପୁଲକିତ ଗଣ୍ଡଦେଶରେ ନାୟକ ଫୁଟାଇଲେ ଚୁମ୍ବନର କଳି ।

ତାପରେ ନାୟକ ହେଲେ ଧାବମାନ ଆଉ ନାୟିକା ହେଲେ ତାଙ୍କର ଅନୁଗାମୀ । ନାୟିକା ଚାହୁଁଥିଲେ ନାୟକର ପୌରୁଷତ୍ୱର ପରାଜୟ ଓ ତାଙ୍କର ପରସ୍ପରର ବିଜୟ । ବହୁ ଦୂର ଅଗ୍ରସର ହେଲେ । ଚରମ କୌଶଳ ଅବଲମ୍ବନ କଲେ । କିନ୍ତୁ ନାୟକର ଗତି ପ୍ରତିରୁଦ୍ଧ କରିବାରେ ହେଲେ ଅସମର୍ଥ । କ୍ଳାନ୍ତ ହେଲେ ନାୟିକା । ଫେରି ଚାହିଁ ଦେଖିଲେ ନାୟିକା ଅଟକି ଯାଇଛି । ଅବଳାର ଗର୍ବିତ ପରାଜୟ, ଅସମର୍ଥର ସଜଳ ସଙ୍କେତ ବହନ କରିଛି । ପରାଜୟର ହାହାକାର ଆହ୍ୱାନ ଜଣା-

ଜିଣ୍ଟି । ନାୟିକା ନୟନକୁ ଫେରାଇଲେ ବେଳାଭୂମିର ନାୟକ । ଆଦରରେ ଟୋକିଲେ ନାୟିକାର କ୍ଳାନ୍ତ ଅବୟବକୁ । ନାୟକଙ୍କ କୋଳରେ ନାୟିକା ହେଲେ ଆତ୍ମହରା । ଚୁମ୍ବନର ନୃତ୍ୟ ଆରମ୍ଭ ହେଲା ମୁଖ ମଣ୍ଡଳର କୋମଳ ଅଂଶରେ । ଅଭିମାନ ହେଲା ସମାପ୍ତ । ନାୟିକା ସ୍ୱୀକାର କଲେ ପୁରୁଷର ପ୍ରଭୁତ୍ୱ ଓ ଶ୍ରେଷ୍ଠତ୍ୱ ।

ପ୍ରଦୋଷର ସ୍ୱପ୍ନିଳ ଆଲୋକରେ ନାୟିକା ଦିଶିଲେ ତେଜ-ମୟୀ । ତେଜମୟୀଙ୍କର ଚାରୁ ଆଭା ସୁନ୍ଦର ହୋଇ ଉଠିଲା ନାୟକଙ୍କ ହୃଦୟ ପଟରେ । ସେମାନେ ବୁଝିଲେ ନାୟକ ଓ ନାୟିକାଙ୍କର ଆଉ ଦୁଇଟି ଭିନ୍ନ ଆତ୍ମା ହୋଇ ନପାରେ । ସେମାନେ ଅନୁଭବ କଲେ ଯେମିତି ସେମାନଙ୍କର ଆତ୍ମାର ବ୍ୟବ-ଧାନ ଠିକ୍ ଶୂନ୍ୟ ହେବାକୁ ଯାଉଛି । ସେଇଠି ହେଲା ସେମାନଙ୍କର ଅମୃତ ମିଳନ । ଏକ ଅକଣ ପୁଲକରେ ସେମାନେ ହେଲେ ମୂର୍ଚ୍ଛିତ । କିନ୍ତୁ ସମସ୍ତ ପାଇଁ ହେଲେ ବାକ୍ ଶୂନ୍ୟ । ପ୍ରଦୋଷର ରବି ହେଲେ ହଠାତ୍ ଅସ୍ତମିତ । ରଙ୍ଗମଞ୍ଚ ହେଲା ତମସାଚ୍ଛନ୍ନ । ପୁରୁଷର ବାହୁ ବନ୍ଧନରେ ନାରୀର ଯେଉଁ ଅନନ୍ତ ଆନନ୍ଦ, ସେଦିନ ଅନୁଭବ କରୁଥିଲେ ନାୟିକା । ଆନନ୍ଦର ଅତି ଶଯ୍ୟାର ସେମାନେ କେତେ କ୍ଷଣ ପାଇଁ ହେଲେ ବିବେକ ବର୍ଜିତ ଓ ମୂର୍ଚ୍ଛିତ ।

ବେଳାଭୂମିର ପ୍ରତ୍ୟୁଷର କୋକିଳ କଣ୍ଠ ପ୍ରତିଧ୍ୱନିତ ହେଲା ମୂର୍ଚ୍ଛିତା ନାୟିକାର କର୍ଣ୍ଣ ଗହ୍ୱରର ଗଭୀରତମ ପ୍ରଦେଶରେ । ଆଉ ନାୟିକା ହେଲେ ଚେତନା ଜଡିତ । ସେ କୋକିଳକୁ ହାତ ମୁଠାରେ ପାଇବାକୁ ଯାଇ ସେମାନେ ଉପସ୍ଥିତ ହେଲେ

ଛନ୍ଦଶାଳାର ବକୁଳବନରେ । ବକୁଳବନର ବକୁଳ ବୃକ୍ଷର ବେଦୀରେ ରଚନା କଲେ ମଧୁ ଶର୍ବରୀର ତଲ୍ପ । ସେଇଠି ନାୟକ ଓ ନାୟିକାର ସ୍ୱପ୍ନ ନେଲା ଏକ ଅଭୂତପୂର୍ବ ବାସ୍ତବ ରୂପରେଖ । କୋକିଳ କଣ୍ଠରେ ବକୁଳ ବନର ମୁକୁଳ ତଲ୍ପର ନାୟିକାର କୋଳରୁ ନାୟକ ହେଲେ ଜାଗ୍ରତ । ନିରୀକ୍ଷଣ କଲେ ସୁପ୍ତ, ଶାନ୍ତ ନାୟିକାର ରୂପଶ୍ରୀ । ଚେତନପୁରର ଗଣ୍ଡଦେଶର ପ୍ରବଳ ଆକର୍ଷଣରେ ନାୟକ ହେଲେ ଆକର୍ଷିତ ଆଜ ବିତରଣ କଲେ ପ୍ରେମର ସେଇ ବାଞ୍ଛିତ ଚୁମ୍ବନ ।

× × × ×

ଗ୍ରାମକୁ ଫେରି ମାନସୀ ଦେଖିଲା ପୃଥିବୀଟା ଯେମିତି ହଠାତ୍ ଓଲଟି ପଡ଼ିଛି । ପରିବାରରେ ଅଶାନ୍ତିର ଧୂମକେତୁ ଘରବାନ୍ଧିଛି ସମସ୍ତେ ଯାହାକୁ ଆକାଶର ଚନ୍ଦ୍ର ବୋଲି କହନ୍ତି, ତାଙ୍କୁ ସେ ହାତ ମୁଠାରେ ପାଇଛି । କିନ୍ତୁ...... । ଜନନୀ ତାର ଜିଦ ଧରି ବସିଛନ୍ତି ପ୍ରସ୍ତାବର ପରିବର୍ତ୍ତନ । ସେ ଚାହାଁନ୍ତି ଆଭିଜାତ୍ୟ ସମ୍ପତ୍ତି । ଜଣେ କପର୍ଦ୍ଦକ ଶୂନ୍ୟକୁ କନ୍ୟା ସମର୍ପି ଦେଇ ଉପହାସ୍ୟର ପାତ୍ରୀ ହୋଇ ନ ପାରନ୍ତି । ସେ ଚାହାଁନ୍ତି କୌଳିନ୍ୟର ପ୍ରତିଷ୍ଠା । ମାନସୀର ମାଁଟା ତାଙ୍କର ଦାବୀ ହାସଲ କରିବା ପାଇଁ ଆରମ୍ଭ କଲେ ଅନଶନ । ପ୍ରସ୍ତାବ ପରିବର୍ତ୍ତନ ହେଲା ଅନିବାର୍ଯ୍ୟ । ମାନସୀ ଅନୁଭବ କଲା ସତେ ଯେମିତି ତା ଉପରେ ଆକାଶଟା ଭୁଶୁଡ଼ି ହୋଇ ଗଲା । କେଉଁ ପରିବାରର ଅଶାନ୍ତି ଆଜିର ଏ ରୂପରେଖ ନେବ ବୋଲି କିଏ ବା କଳ୍ପନା କରିଥିଲା ? ଶେଷରେ ସମସ୍ତ ସମ୍ବନ୍ଧ ତୁଟି ଯାଇଥିଲା ।

ଗୋଟିଏ ଦିଗରେ ମହାମାୟୁ ଆତ୍ମାର ନବୀନ ମିଳନ ବେଳେ ଅନ୍ୟ ଦିଗରେ ତାହାର ପ୍ରତିହିଂସା ଅତି ମର୍ମାନ୍ତୁଦ ଯନ୍ତ୍ରଣାର ମନ୍ଦିର ହୋଇ ରହିଥିଲା ।

ମାନସୀ ଅନୁଭବ କଲା ଯେମିତି ଦିନକୁ ଦିନ ନରେନ ସେ ତାଙ୍କଠାରୁ ଦୂରେଇ ଯାଉଛି । ସ୍ନେହରେ କମା ଓ ତାପରେ ପୂର୍ଣ୍ଣଚ୍ଛେଦ ଟାଣି ହୋଇ ଯାଉଛି । ସେ ଆଉ ଅଧିକ ଅଗ୍ରସର ହେବାକୁ ଚେଷ୍ଟା କଲାନାହିଁ । କାଳେ କିଛି ଘଟିପଡ଼େ । ତରୁଣୀ ମନର ଏ ଦୁର୍ବଳ ଆଶଙ୍କାରେ ଦୂରେଇ ଗଲା ମାନସୀ । ଅନ୍ୟ ପକ୍ଷରେ ସେ ବି ମାନସୀକୁ ଭୁଲ ବୁଝିଲେ । ସେ ମଧ୍ୟ ଦୂରେଇ ଗଲେ ।

କିନ୍ତୁ ସେହି ଦିନଠାରୁ ଆରମ୍ଭ ହେଲା ଅଦୃଶ୍ୟର ଭୂମିକା। ମାନସୀ ଅନୁଭବ କଲା ନୂତନ ଜୀବନର ସଞ୍ଚାର । କେତେ ନାରୀ ଏତିକି ନପାଇ ନିଜକୁ ହତଭାଗିନୀ ମନେ କରନ୍ତି । କିନ୍ତୁ ମାନସୀ ଅନୁଭବ କଲା ତାର ଠିକ୍ ବିପରୀତ । କର୍ଣ୍ଣରେ ତାର ବାରମ୍ବାର କଳଙ୍କିନୀ ପଦର ପ୍ରତିଧ୍ୱନି ନୃତ୍ୟ କଲା । ପରିବାରର କଠୋର ଜିଦ୍ ତାକୁ ତିଳ ତିଳ କରି ଚୂର୍ଣ୍ଣୀଭୂତ କରିବାକୁ ଲାଗିଲା । ଅବସ୍ଥା ଯେ ଜଟିଳ କେତେ ତାହା ବୁଝିଲେ ନାହିଁ । ତଥାପି ଅସୀମ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବ । ତାପରେ ସେ ନେବ ନିଷ୍ପତ୍ତି । କିନ୍ତୁ ସେ ଜନ୍ମିତ ପିତା ମାତାଙ୍କୁ ଅମାନ୍ୟ କରିବନି ।

ସମାଜର ଅନ୍ତରାଳରେ ସେ ଠିକ୍ କଲା ଆତ୍ମରକ୍ଷାର ଉପାୟ । ତାଲିମ ଉଦ୍ଦେଶ୍ୟରେ ସେ ସ୍ଥାନାନ୍ତରିତ ହେଲା ସୁଦୂର

ଝୁଲିଲୁ । ସଦ୍ୟଜାତ ସ୍ୱାସ୍ଥ୍ୟ ପରିଦର୍ଶିକା ତା'କାମ ସମାପ୍ତ କରି କେତେ ଦାନ ନେଇ ଫେରିଗଲେ ତା'ର ଜନ୍ମ ଶୁଣିଲୁ । ସେଇଠି ଏକ ପ୍ରସୂତି ଧଇଁସଇଁରେ ଶୟନ, ତେଣେ ତାର ସଦ୍ୟ ଶିଶୁ ପୁତ୍ର । ଶିଶୁଟିର କୁଆଁ କୁଆଁ ସ୍ୱର ଶୁଣିଦେଲା ତେବେ ତୃପ୍ତି । ସମାଜର ଆଇନ ଭିତରେ ଏ ଘଟଣା ଘଟିଥିଲେ ସେ ଆତ୍ମାର ତୃପ୍ତି ପାଇ ଥାଆନ୍ତା । ସ୍ୱାମୀ ବିଦ୍ୱାନ କରିବାକୁ କେତେ ଆଗ୍ରହ ହୁଅନ୍ତେ । ଅଜା ଆଈ ତାର ଟିକିଏଟି ଖୁସି ହୁଅନ୍ତେ । କିନ୍ତୁ ଆଜି ତାର ଚକ୍ଷୁରୁ ବହୁଯାଉଛି ଅଶ୍ରୁ । ତାଙ୍କୁ ସେ ଦମନ କରି ପାରୁନି । ମୁଖ ମଣ୍ଡଳ ବିକୃତ ଓ ମ୍ଳାନ ଦେଖାଇ ଉଠୁଛି । ତଥାପି ସେ ଅପେକ୍ଷା କରିଛି ଆକାଶ କୁସୁମ ଲାଭିବା ପାଇଁ । ଜଳକୁ ସୀତା ଯା'କ ଆଶ୍ରମରେ ଅପେକ୍ଷା କରିଥିଲେ ଲାଭିବା ପାଇଁ ତାର ପ୍ରାଣର ରାମଚନ୍ଦ୍ରଙ୍କୁ ।

କିନ୍ତୁ ହାୟ, ତା'ର ଆକୁଳ ପ୍ରାର୍ଥନାକୁ ପରଂବ୍ରହ୍ମ କରିଛନ୍ତି ପ୍ରତ୍ୟାଖ୍ୟାନ ।

ସେ ଆଉ ତାଙ୍କୁ ପାଇବନି । ପିତା ମାତା ପରା ମତ ପରି-ବର୍ତ୍ତନ କରି ନାହାନ୍ତି । ସମାଜକୁ ଡରି ସେ ମଧ୍ୟ ତାଙ୍କୁ ଆପଣାର କରିପାରିବ ନି ।

କୁନା ତାର କେତେଝଟା ହେଲାଣି । ମା' ସ୍ୱଭାବରେ ତାର କର୍ତ୍ତବ୍ୟ କରି ପାରୁନି । ତାଙ୍କୁ କଣ ଲୁହ ଦେଖାଇ ସାନ୍ତ୍ୱନା ଦେବ ? କୁନା କଣ ଲୁହ ବୁଝେ ?

ମା ତା'ର କୋଳରେ ଶିଶୁ ପାଏ ଯେଉଁ ଉଷ୍ମତା, ମଧୁର ସ୍ତନ ପାନରେ ଯେଉଁ ତୃପ୍ତି, କୋମଳ ସମ୍ବୋଧନରେ ଯେଉଁ ତୁଷ୍ଟି ଭୁଲିବାର ଶକ୍ତି ସେଥିରୁ ମାନସୀ ତାଙ୍କୁ ବଞ୍ଚିତ କରୁଛି ।

କୋଳର ଉଷ୍ମତା ଛନା ସନ୍ତାନର ଅସ୍ଥି ହେବ ଚୂର୍ଣ୍ଣ । ସ୍ତନ ଝରା ହେବ ଶଙ୍କର ପୁଷ୍ଟିହୀନ । କୋମଳ ସମ୍ବୋଧନ ଧ୍ୱନା ହେବ ଅପ୍ରୟୋଜନୀୟ । ଏ କଣ ତା'ର କଲ୍ୟାଣମୟୀ ଜନନୀର ଆଶୀର୍ବାଦ !! ନା......ନା......ସେ କୁନାର ଗଣ୍ଡଦେଶରେ ଅଙ୍କିଦେବ ଚୁମା । ଆଉ ବୁକର ଆମ୍ବ'ରେ ଭରିଦେବ ମାତାର ମମତାପୂ ପ୍ରେମ ।

ହଠାତ୍ ନିଦ୍ରା ଭଗ୍ନ ହେଲା ।

ଆରମ୍ଭ ହେଲା ଯନ୍ତ୍ରଣା । ଅଙ୍ଗ ପ୍ରତ୍ୟଙ୍ଗ ସଜ ଭି ହେଲାଣି । ନନ୍ଦ କେଉଟାଣୀ ହେଉଛନ୍ତି । କେବଳ ଲୋଚନ ତାଙ୍କ କଷ୍ଟକୁ ପ୍ରକାଶ କରୁଛି ।

× × × ×

ଡାକ୍ତର ବାବୁ ବସି କଣ ଗୁଡ଼ାଏ ଭାବୁଥିଲେ । ମୁଖ-ମଣ୍ଡଳରେ ବିଷାଦ ଚିହ୍ନ ଲାଗି ରହିଥିଲା । ରଶ୍ମିଦେବୀ ଆଶ୍ରମ ବିଦ୍ୟାଳୟରୁ ଫେରିଲେ । ଉଭୟେ ଉଭୟଙ୍କୁ କଲେ ଅବଲୋକନ କିନ୍ତୁ ଡାକ୍ତର ମୁଖମଣ୍ଡଳରେ ସରସତା ନଥିଲା । ରଶ୍ମିଦେବୀ ନରମ ଗଳାରେ ଅନୁରୋଧ କଲେ ମୋର ଜଣେ ବନ୍ଧୁ ଆଜି ବିପଦଗ୍ରସ୍ତ । କଷ୍ଟ ହେଉଛି ତା ସହିତ ସାକ୍ଷାତ କରିବା । ସେ ଲକ୍ଷ୍ମୀ ଏହି ସହରର କେଉଁଠାରେ ଥିବ । ତାଙ୍କୁ ବାହାର କରିବାକୁ ହେବ । ମୋତେ ସାହାଯ୍ୟ କରିବେ ?

ଡାକ୍ତର ବାବୁ ତଥାପି ଥିଲେ ଅନ୍ୟମନସ୍କ । ରଶ୍ମିଦେବୀ ପୁଣି ପ୍ରଶ୍ନ କଲେ — ଆପଣଙ୍କ ଗ୍ରାମରେ ମାନସୀ ଦାସଙ୍କୁ ଜାଣନ୍ତି ?

ମା...ନ...ସୀ ! ମାନସୀ ... ... ଦାସ !! ପାଟିକରି ଉଠିଲେ ଡାକ୍ତରବାବୁ । କହିଲେ – ମୁଁ ଭଲଭାବେ ଜାଣେ । ସେ ବର୍ତ୍ତମାନ ବ୍ରହ୍ମପୁର ହସ୍ପିଟାଲରେ ଚିକିତ୍ସାଧୀନ । ଆଜି ମୋର ଡ୍ୟୁଟି ଥିଲା । ଅନେକ ପ୍ରକାର କୌଶଳ ପ୍ରୟୋଗ କରାଗଲା । କିନ୍ତୁ ଶୁଭ ଲକ୍ଷଣ ଦେଖାଯାଉ ନାହିଁ ।

ରଶ୍ମିଦେବୀ ବନ୍ଧୁ ପ୍ରତି ସହାନୁଭୂତିରେ ଜଳ ବର୍ଷଣ କଲେ । ସଂସାରଟା ତାଙ୍କୁ ପ୍ରହେଳିକାମୟ ଦେଖାଗଲା । ମାନସୀର ସ୍ୱାଗତ ସମ୍ଭାଷଣ ତାଙ୍କ ମନରେ ସୃଷ୍ଟି କଲା ବ୍ୟଥା । ଆଉ କିଛି ଭାବି ପାରିଲେ ନାହିଁ । ମାନସୀ ଥରେ ତାଙ୍କର ଗୋଲାପ ଥିଲା । ତାର ଚିଠିର ଉତ୍ତର ଦେଇଥିଲା ମାନସୀ । ସ୍ୱାମୀଙ୍କୁ ତାର ଚିଠି ଖୋଲି ଦେଖାଇଥିଲା । ଏଇମିତ୍ର ପରିବାର ପ୍ରତି ତାର କପଟ ସହାନୁଭୂତି ଥିଲା ଚିଠି ପାଠକରି ଡାକ୍ତର ବାବୁ ସବୁ ବୁଝିନେଲେ ।

ସେ ଯାହା ଭାବୁଥିଲେ । ମାନସୀ ସେପରା ଭାବୁଥିଲେ । ମିତ୍ର ପରିବାର ପ୍ରତି ମାନସୀର ପ୍ରଶଂସା ପୂର୍ଣ୍ଣ ମନ୍ତବ୍ୟ ତାଙ୍କୁ କଲା ମର୍ମାହତ । ହତଭାଗିନୀ ପାଇଁ ଦୁଃଖ ପ୍ରକାଶ କଲେ । ମାନସୀ ଏତେ ଦୂର ଆଗେଇ ଯାଇଥିଲା । କିନ୍ତୁ......ଆଉ ଅଳ୍ପ ଆଗକୁ ଆସି ପାରିଲା ନାହିଁ ।

ତାର ଜୀବନରେ କେହି ଶ୍ରୀକୃଷ୍ଣ ନଥିଲେ । ଥିଲେ କଣ୍ଟକ ବୁଝାଇ ଥାନ୍ତେ ରଣ କ୍ଷେତ୍ରରେ ଲାଗିବାକୁ କେହି କିଛି ନାହିଁ । ସମସ୍ତେ ବୃହାନ୍ତ ଯୁଦ୍ଧ । ରାଜ୍ୟ ଜନନ ସମସ୍ତଙ୍କର କର୍ତ୍ତବ୍ୟ ।

ମାନସୀ ଅଙ୍କିତା ନୁହେଁ । ତଥାପି ଯୁଦ୍ଧର ସମ୍ମୁଖୀନ ନହେଲା କାହିଁକି ?

ଅବଶ୍ୟ ପରିବାରକୁ ତ୍ୟାଗ କରିବାର ଶକ୍ତି ଏ ସରଳ ତରୁଣୀ ପ୍ରାଣରେ ସ୍ଥାନ ପାଇ ନଥିଲା ।

ଅଜ୍ଞାତର ଆବରଣକୁ ଉନ୍ମୋଚନ କରି ଉନ୍ମେଷିତ ହେଲା ବସନ୍ତ । ଅଜ୍ଞାତରେ ନୃତ୍ୟ ବିଳସିତ ଚରଣ ପଙ୍କେ । ମାନସ ପଟରେ ଆନ୍ଦୋଳିତ ହେଲା ଝୁରିଆନାର ବକୁଳ କଢ଼ର ହସ । ଆଜି ମନେ ପଡୁନି ବକୁଳ ମୁକୁଳର ମଧୁ ଶର୍ବରୀର ଚାଲୁ । ତରୁଣୀ ଗଣ୍ଡଦେଶରେ ଆପତ୍ତିହୀନ ପ୍ରେମ ବିତରଣର ସୁଯୋଗ ।

ମହୋଦଧିର ପ୍ରଚଣ୍ଡ ଧ୍ୱନି ମଧ୍ୟରେ ଆଘ୍ରାଣ କରି ଚାଲିଥିଲେ ତରୁଣୀ ଯୌବନର ସୁରଭିତ କସ୍ତୁରୀ । ଆଉ ତାର ବନ-ମଧୁରେ ପ୍ରଦାନ କରିଥିଲେ ମୁଠା ମୁଠା ଆମ୍ବ ।

କେତେକ ପାରିବାରିକ ଅସୋହାସ୍ୟରୁ ମାନସୀ ନିଜକୁ ଦୂରେଇ ରଖିଥିଲା । ଆଜି ସେ ବି ତାଠାରୁ ବହୁ ଦୂରକୁ ଚାଲି ଯାଇଥିଲେ । କିନ୍ତୁ ସେ ସମସ୍ତ ଆଜି ନଥିଲା । ସେ ବର୍ତ୍ତମାନ ଇଣ୍ଡିର ସ୍ୱାମୀ...... ।

'ବ୍ୟଥିତ କଣ୍ଠରେ ଇଣ୍ଡି ଦେବୀ ପ୍ରକାଶ କଲେ—ମାନସୀ ଆଜି ଗୋଟିଏ ସନ୍ତାନର ଜନନୀ । ବିସ୍ମିତ ହେଲେ ଡାକ୍ତରବାବୁ । ମାନସୀ ଅବିବାହିତା । ତେବେ...ତେବେ...ବିଚଳିତ ହୋଇ ପଡ଼ିଲେ ସେ । ମାନସୀର ସନ୍ତାନ ପାଇଁ ଡାକ୍ତର ବାବୁ ମଧ୍ୟ ଦାୟୀ । ଏତେ ବଡ ରହସ୍ୟ ତାଙ୍କୁ ଅଜଣା ରହିଛି । ବାବୁ

ଆହୁରି ଅସ୍ଥିର ହେଲେ । ପିତା ହିସାବରେ ତାଙ୍କର ମଧ କଣ ପୁତ୍ର ପ୍ରତି କର୍ତ୍ତବ୍ୟ ନାହିଁ ? ବାବୁଙ୍କର ସନ୍ଦେହ ଆହୁରି ବୃଦ୍ଧି ହେଲା । ପ୍ରଶ୍ନ କଲେ— ମାନସୀ ଏକ ସନ୍ତାନର ଜନନୀ ପ୍ରମାଣ କଣ ?

ଅନାଥ ଆଶ୍ରମର ରେଜଷ୍ଟର କହେ ସେହି ସୁପୁଷ୍ଟ ଶିଶୁ ମାନସୀ ଦାସର । ଦିଲ୍ଲୀର ଏକ ପ୍ରସୂତି ଭବନରେ ତାର ଜନ୍ମ । ସୁବିଧା ଦୃଷ୍ଟିରୁ ଗୋପାଳପୁରକୁ ସ୍ଥାନାନ୍ତରିତ ହୋଇ ଆସିଛି । ଅତୀତରେ କେବେ ଦେଖିଲା ପରି ମନେ ହେଉଛି । କିନ୍ତୁ କେଉଁ ଠାରେ ଜଣାନାହିଁ ।

ବାବୁ ଅସ୍ୱାଭାବିକ ଭାବେ ଅସ୍ଥିର ହୋଇ ଉଠିଲେ । ତେବେ ତାଙ୍କର ଅସାଧାରଣ ସାମଞ୍ଜସ୍ୟ ଥିବା ଯୋଗୁଁ ବୋଧ ହୁଏ ତାକୁ ଦେଖିଲା ଭଳି ମନେ ହେଉଥିବା ଲକ୍ଷ୍ୟ କରିଛନ୍ତି ।

ମାନସୀ ଦାସ ଏତେ ଦୂର ଅଗ୍ରସର ହୋଇ ଆଉ ଅଳ୍ପ ଆଗେଇବାକୁ ସାହାସ କରିନ । ସମାଜକୁ ଡ଼ରି ଅପେକ୍ଷା କରି ଥିଲା । ବୋଧହୁଏ ସେ ଚାହୁଁଥିଲା ଏକାନ୍ତ ଭାବରେ ଡାକ୍ତର ବାବୁଙ୍କୁ ! କିନ୍ତୁ ବାବୁ ଗରିବ ବୋଲି ତାହା ସମ୍ଭବ ହେଲାନାହିଁ । ତଥାପି କାଳେ ସୁଯୋଗ ଜୁଟିମିବ ବୋଲି ଭୃତକ ଭଳି ଧୃଷ୍ଟି ରହିଥିଲା । କିନ୍ତୁ ରଶ୍ମି ମିଶ୍ର ପରିବାରକୁ ବୋହୂ ହୋଇ ଆସିବା ପରେ ପରେ ତାକୁ ଆଘାତ ଲାଗିଲା ।

ଏ ଆଘାତର ସୃଷ୍ଟି କର୍ତ୍ତା ସେ ନିଜେ ମଧ ହୋଇପାରେ । ତାଙ୍କେ ଅନ୍ୟ କେହି ଏହି ସ୍ଥାନ ଅଧିକାର କରି ବସିବ । ତେଣୁ ମାନସୀ ରଶ୍ମିକୁ ଯୋଗ୍ୟ ବୋଲି ସ୍ଥିର କରିଥିଲା ।

ରଶ୍ମିର ସୌଭାଗ୍ୟରେ ସେ ହେଉଥିଲେ ବିସ୍ମିତ । କିନ୍ତୁ ବିସ୍ମିତ ହେଉଥିଲେ ବିବାହୋତ୍ତରରେ ନିଜର ଉନ୍ନତି ଲୁଟି ପାଇଁ । ବିପର୍ଯ୍ୟାସ୍ତର ଦାରୁଣ ଆକ୍ରମଣରେ ମାନସୀ ଅନୁଭବ କଲା ଦୁର୍ବଳତା । ତେଣୁ ଆଜି କେଇଟା ମାହାତ ଉଠି ପାରୁନାହିଁ ମାନସୀ । ଭୂତଳ ପ୍ରାସାଦର ନର୍ମଦ ଉଚ୍ଚ ଅଳି ପଡ଼ିଥିଲା ଧରଣୀ କୋଳକୁ ।

ଜୀବନ ଆଜି ବିପନ୍ନ । ମୃତ୍ୟୁ ହେଲା ଆସନ୍ନ ।

ଦେଖିଲେ କାନ୍ତା ତାଙ୍କର ଆଡ଼କୁ ଦୌଡ଼ି ଆସୁଛି । କାହିଁକି ? କଣ ଆବଶ୍ୟକ ଅଛି ? ମଣିଷକୁ କଣ କିଛି ସାନ୍ତ୍ୱନା ମିଳିବ ନା ?

କାନ୍ତା ସ୍ତୁତି ଉତ୍ତର ଅବଳୟକୁ ଆପ୍ଲୁତ କରି ପ୍ରକାଶ କଲା — ବାବୁ, ରୋଗୀଟି ଭାରି କଷ୍ଟ ପାଉଛି । ଖୁବ୍ ପ୍ରଳାପ କରୁଛି । ଆପଣଙ୍କୁ ଓ ଆପଣଙ୍କର ସ୍ତ୍ରୀଙ୍କୁ ଡାକି ଦେବା ପାଇଁ ମିଡା ମାତା ଜାର କହୁଛନ୍ତି । ରୋଗୀଟି କେବଳ, ଗୋଲାପ ଗୋଲାପ ହେଉଛି । ପ୍ରଳାପ କରୁଛି— ଗୋଲାପ ତୋତେ ଲଗିଲା, ତୁ ଭାର ଗ୍ରହଣ କରିବୁ । କୁନା ଆଉ କେହି ନୁହେଁ, ତୁମ ପରିବାରର ସନ୍ତାନ ।

ସ୍ୱାମୀ ସ୍ତ୍ରୀ ଧାଇଁଲେ ସେଠାକୁ । ଦେଖିଲେ ମାନସୀ ଯନ୍ତ୍ରଣାରେ ଲୋଟୁଛି । ଅନ୍ତିମ ସମୟରେ ଭାଷା ଉଦ୍-ଗାରଣ କରୁଛି । ଗୋଲାପ — ତୋତେ ଲାଗିଲା । ଇସ୍...... । ମୁଣ୍ଡଟାକୁ ଚପି ଧରୁଛି । ରଶ୍ମି ତା ମୁଣ୍ଡ

ଉପରେ ବସି ଅଇଁସି ଆଉଁସି ସାନ୍ତ୍ୱନା ଦେଉଛନ୍ତି । ତଥାପି ସେ ଆଖି ଖୋଲିନ ତାକୁ ଦେଖିବାକୁ । ବିବ୍ରତ ହେଲେ ରଶ୍ମି ।

ଡାକ୍ତର ବାବୁ ଅନେକ ଡାକିଲେ ତଥାପି ଆଖି ଖୋଲିଲା ନାହିଁ । ମାନସୀ ଜାଣି ପାରିଲା ମୃତ୍ୟୁ ବେଳକୁ ଡାକ୍ତର ବାବୁ ତା ପାଖକୁ ଆସିଛନ୍ତି । ତାଙ୍କର ରକ୍ତ ମାଂସର ଶରୀରକୁ ନେଇ । କିନ୍ତୁ ...... କିନ୍ତୁ ......ତାଙ୍କ ମାନସ ପଟରେ କେଉଁ ନାରୀ ହୋଇଛି ତାଙ୍କର ପ୍ରଣୟୀ ? ପ୍ରଳାପରେ ବିଦ୍ରୁପ କଲା ମାନସୀ ।

ରଶ୍ମି ଦେବୀ ଚିନ୍ତା କଲେ କୁନା ତା'ର ବୋଉକୁ ଦେଖୁ । ଧାଇଁଲେ ଅନାଥ ଆଶ୍ରମକୁ । କୁନା ସେମିତି ଖେଳୁଛି । ସେ ଜାଣେନା ମା'ର ଆବଶ୍ୟକତା । ସ୍ତନ ପାନର ସ୍ମୃତି ତା'ର ନାହିଁ । ସେ ଧାତ୍ରୀ ପାଳିତ । ତାର ଏ ସଂସାର ନାରୀ ଜାତି ପ୍ରତି ମମତା ନାହିଁ । ନାରୀ ଠାରୁ ସ୍ନେହ, ଶ୍ରଦ୍ଧା, ମମତା ଆହରଣ କରିବା ସେ ଶିଖିନ । କେବଳ ଖେଳୁଛି, ବୁଲୁଛି, ବିଳାସ କରୁଛି । ଧାତ୍ରୀର ଅନୁଗ୍ରହରେ ସ ଠାଏ ଖାଇ ଘୁରୁଛି । ଏ ସଂସାର ତା ପାଇଁ ଗବେଷଣା ଗାର ନୁହେଁ । ବରଂ ବିଷର ଉପହାର । ସେ ଆଶୀର୍ବାଦ ଶୂନ୍ୟ । ଆଜି, ଅଭିଶପ୍ତ ବେଦନାର ମନ୍ଦିର ।

ରଶ୍ମି କୁନାକୁ ଟେକି ନେଲେ ତାଂକ କୋଳକୁ । ଶଯ୍ୟା ପାଖରେ ଥାଇ ରଶ୍ମି ଦେବୀ ଡାକିଲେ— ଗୋଲାପ, ହେଇ ଦେଖ କୁନାକୁ ।

କୁ......ନା ...... ! କୁ......ନା...... ! ଆଖି ଖୋଲିଲା ମାନସୀ । ବ୍ୟଗ୍ରରେ ଥରେ କୋଳ କରିବାକୁ ଉଠିଲା । କିନ୍ତୁ ପାରିଲା ନାହିଁ । ଯନ୍ତ୍ରଣାରେ ସଢ଼ି ଗଲା । ରଶ୍ମି କୁନାକୁ ମାନସୀର ମୁହଁ ପାଖକୁ ନେଇ ଗଲେ । ମାନସୀ ଆତୁରରେ ଆଙ୍କି ଦେଲା ତାର ଶେଷ ଚୁମା ।

ତାପରେ ମାନସୀ ଆଉ ପାରିଲା ନାହିଁ । ସବୁଦିନ ପାଇଁ ବିଦାୟ ନେଲା ଏକ ଆହ୍ଲାଦ ଆତ୍ମା ।



# ପ୍ରେତ ପୁରୀର ରାଜା

ବାତ୍ୟା ବିଧ୍ୱସ୍ତ ଅରଣ୍ୟାନୀ ବକ୍ଷରେ ଏକ ବିପର୍ଯ୍ୟସ୍ତ ମାର୍ଗ । ଯାନ ଅତିକ୍ରମ କରିବା ଅସମ୍ଭବ । ଅକ୍ଲାନ୍ତ ଉଦ୍ୟମ ପରେ ବୃଳଙ୍କ ଶେଷ ନକ୍ଷତ୍ରରେ ପହଞ୍ଚିଲେ ।

ଅସନ୍ତୋଷର କ୍ଷୀଣ ଛାୟା ଖେଳିଗଲା । ଆନ୍ଦୋଳିତ ଚିତ୍ତରେ ଯାନରୁ ଯାତ୍ରୀଗଣ ଅଗ୍ରସର ଆସିଲେ । ମୁହୂର୍ତ୍ତକ ମଧ୍ୟରେ ଦଳ ଦଳ ପ୍ରସ୍ଥାନ ରତ ହେଲେ । ଏ ଅପ୍ରତ୍ୟାଶିତ ଘଟଣା ସୃଷ୍ଟି କଲା ସୁନନ୍ଦାଙ୍କର ମାନସିକ ଆନ୍ଦୋଳନ । ସେ ଏଠାରେ ନିଃସଙ୍ଗୀ । ଉପସ୍ଥିତ ଦିବସକୁ ଧିକ୍କାର କଲେ, ତାର ଏହି ଅଶୁଭ ସଙ୍କେତ ପାଇଁ ।

ଶାର୍ଦ୍ଦୂଳ ଅଛି ଏ ସ୍ଥଳୀ ।

କୋଶସ୍ପୃଷ୍ଠର ତମସାଚ୍ଛିନ୍ନ, ବିପଦ ସଙ୍କୁଳ ଜଙ୍ଗଲ । ସମସ୍ତଙ୍କର ସମସ୍ତ ନାହିଁ । ସମସ୍ତେ ବେହୁସିଆର । ବାତ୍ୟା ବିଧ୍ୱସ୍ତ

ଅନ୍ତକାଳୁ ଗଣ୍ଡି ଧରି ବର୍ତ୍ତମାନ ସୁଦ୍ଧା ଲେଟି ରହିଛୁ ସଜ୍ଜା ଉପରେ । ମେରୁ ରେଗାହ୍ୱାନ୍ତ ନଦୀ ସେତୁ ଉପରେ ଯାନ ଚଳିବ କପରି ? ଯନ୍ତ୍ରୀର ବିଜ୍ଞାନ ଦେଖେ ବା କିଏ ?

ଯେମିତି ହେଲେ ସେ ଆସନ୍ତା କାଲି ତାଙ୍କର କର୍ମକ୍ଷେତ୍ରରେ ଉପସ୍ଥିତ ହେବାକୁ ପଡ଼ିବ । ନୋହିଲେ କଲମ ଗାରର ଦନ୍ତଗଞ୍ଜ ଖତ୍ମ ହେବ । ବୁକଣ୍ଟ ଉପରେ ଆଞ୍ଚ ଆସିବ । ଖାଲି ତ ଏକାକୀ ଥିଲେ ଉପାୟ ଥିଲା, କିନ୍ତୁ ତାଙ୍କ ସାଙ୍ଗରେ ଅନ୍ତକାଳୁ ଟ୍ରଙ୍କଟିଏ ମଧ୍ୟ ଅଛି । କେମିତି ଯିବେ ? ଆସନ୍ନ ସନ୍ଧ୍ୟାରାଣୀଙ୍କର ମୁକୁଟ ପଶ୍ଚିମ ଆକାଶରୁ ସୃଷ୍ଟି କଲା କେତେ ଶଙ୍କାକୁଳ ପ୍ରଶ୍ନ ।

ଏ ଅସ୍ଥିରତା ଭିତରେ ଜଣେ କୁଲି ଜୁଟିଗଲା । କଟି ଦେଶର କଷଦିଆ ଗାମୁଛାକୁ ସଜାଇ ଭିଜୁ ଭିଜୁ, ପଗଡ଼ି ସଜାଡ଼ି ସଜାଡ଼ି ପଚାରିଲା—ଦେଖନ୍ତୁ ! ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି ? କେଉଁଆଡ଼େ ଯିବେ କି ?

"ମୁଁ ଗୁଆର ଯିବି । ମୋର ଟ୍ରଙ୍କଟି କେମିତି ଯିବ ? ବେଳ ଗୁଡ଼ାଏ ହେଲାଣି ।"

"କାହିଁକି ? ମୁଁ ଅଛି । କିନ୍ତୁ ଦେଖନ୍ତୁ ! ଗୁଆର ଯାଇ ହେବ ନାହିଁ । ତେବେ ଆସନ୍ତା କାଲି ଯିବେ ।

"ନାହିଁ, ଆଜି ହିଁ ଯିବାକୁ ହେବ ।"

× × × ×

ନଟିଆ ତାଙ୍କର ହେଲା ଅନୁଗାମୀ, ଯେଉଁ ଘନ ଜଙ୍ଗଲର ଧୂଳି ଧୂସରିତ ରାସ୍ତାରେ ।

ଶଙ୍କାପ୍ଲୁତ କଣ୍ଠରେ ଦେଈ ପ୍ରଶ୍ନ କଲେ......"ନଟିଆ ବାଟରେ ବିପଦ ପଡ଼ିବନି ତ ?"

ସଗର୍ବେ ନଟିଆ ଉତ୍ତର ଦେଲା—ଦେଈ, ନଟିଆ ଏହି ଜଙ୍ଗଲରେ ରାଜତ୍ୱ କରେ । ସ୍ୱେର, ଡକାୟତ ତାର ବଳିଷ୍ଠ ବାହୁର ପାର୍ଶ୍ୱବର୍ତ୍ତୀ ହେବେ ନାହିଁ । ହାତୀ ପଲଙ୍କୁ ଦେଖିଲେ ନଟିଆକୁ ମନ୍ତ୍ର ଜଣାଅଛି । ଶାର୍ଦ୍ଦୂଳ, ଭଲ୍ଲୁକ ସାଙ୍ଗରେ ସେ ପ୍ରାୟ ଖେଳେ । ଆଜ ଭୟର ସୂଚନା ନାହିଁ ।

ଦେଈ, ନଟିଆର ସାହଲ୍ୟତା, ସାହାସିକତା ଓ ପରୋପକାରିତା ପାଇଁ ମନେ ମନେ ପ୍ରଶଂସା କରୁଥିଲେ ।

"ଆଚ୍ଛା, ଗୁଡ଼ାରେ ପହଞ୍ଚିବାକୁ ବେଳ ପାଇବ ତ ?"

"ନାହିଁ ଦେଈ, ଆଜ କେତେ ରାସ୍ତା ଗଲେ ସୂର୍ଯ୍ୟ ବୁଡ଼ିଯିବ । ତଥାପି କିଛି ଭୟ ନାହିଁ । ରାସ୍ତା କରେ କରେ ଅନେକ ପରିଚିତ ପଲ୍ଲୀ । ତାର ଅନେକ ସଙ୍ଗାତ ମୈତ୍ର । କେଉଁଠି ହେଲେ ବିଶ୍ରାମ ନେବା ପାହାନ୍ତରୁ ଚାଲିଗଲେ ହେବନି ?"

ଦେଈ ପଚାରିଲେ, ତାଙ୍କ ପ୍ରତି ନଟିଆର କେତେ ଦରଦ । ନଟିଆ ବନବାସୀ ହେଲେ ମଧ୍ୟ ସାହଲ୍ୟ ସହାନୁଭୂତି ସୌଜନ୍ୟତାର ମୀନାର ।

" ଆରେ ଏଠି କେଉଁଠାରେ ଗୋଟିଏ ବଙ୍ଗଳା ଥିଲା । ତୁ ଜାଣୁ ?"

"ହଁ ଦେଈ, ଏଠି ଅଛୁ । ହେଲେ ତା କଥା ପକାନ୍ତୁ ନାହିଁ । ଆଜି କଣ ସେଇଟା ବଙ୍ଗଳା ହୋଇ ରହିଛି ? ସେଇଟା ବର୍ତ୍ତମାନ ଗୋଟିଏ ପ୍ରେତ ପୁରୀ"... .....ତାର ସରଳ କଣ୍ଠରେ ଉତ୍ତର ଦେଲା ନଟିଆ ।

ପ୍ରେତପୁରୀ ! ଚମକି ପଡ଼ିଲେ ସୁନନ୍ଦା ।

ହଁ ଦେଈ, ଏଇ ନଟିଆ ପରା ସେଇଠି ଓ୍ୱାଚର ଥିଲା । ଭଲ ଦରମା ମିଳୁଥିଲା । ଉପୁରି ଦ' ପଇସା ମିଳୁଥିଲା । ଖାଇବା ପିଇବା ପ୍ରାୟ ସିମିତ ସିମିତ ଚଳିଯାଉଥିଲା । ମୋଟା ଗଦି ଉପରେ ଡୋଳେଇ ଡୋଳେଇ ସୁଖରେ ଦିନ ଗୁଡାକ କଟି ଯାଉଥିଲା । ପୃଥୁଳ ଅର୍ଥର ସହାୟତାରେ ରାତା ରାତି ପରା ନଟିଆ, ନଟବର ବାବୁ ପାଲଟି ଯାଇଥିଲା । ହେଲେ ଦେଈ ଗୁଳଚାଟା କଣ ଭଲ ଲାଗିଲା ? ସବୁ ଦିନ। ହେବ ଦେଈ ସେଇଠି ଯାହା ହେଉଛି, କଣ ଏ ନଟିଆ ପାରିବ ? ବାଧ୍ୟ ହୋଇ ଗୁଳକରି ଛାଡ଼ିଲା ।

ନଟିଆର ଯୌବନ ଅସ୍ତାତ ହୋଇଛି ସତ, ତାହାର ସାହାସ ଓ ଧୈର୍ଯ୍ୟ ଆତୁର ଧମାଭୂତ ହୋଇଛି । ସାରଲ୍ୟର ବିକାଶ ଘଟିଛି । ଯନ୍ତ୍ରଣା ସହି ଅନ୍ୟର ଯନ୍ତ୍ରଣା ଲାଘବ କରୁଛି ମନେ ମନେ ପ୍ରଶଂସା କଲେ ସୁନନ୍ଦା ।

"ସେଇଠି ସବୁ କଣ ହୁଏ ? ବିସ୍ମିତ କଣ୍ଠରେ ପ୍ରଶ୍ନ କଲେ ସୁନନ୍ଦା" । ନା ଦେଈ, ଆପଣ ମାଈକିନିଆଁ ଲୋକ ଏ ଜଙ୍ଗଲ ରସ୍ତା, ଅନ୍ଧାର ରାତି ଆପଣଙ୍କୁ ଡର ମାଡ଼ିବ । କାଲିକି କହିବି ।

ବଙ୍ଗଳାର ପ୍ରାଚୁର୍ଯ୍ୟ ହୁଏତ ଅନ୍ୟତ୍ର ଦୁର୍ଲଭ ହୋଇପାରେ । ସୁନନ୍ଦା ଗୁହିଁଲେ କେମିତି ଆଜ ରାତିଟା ଏଭଳି କଟିଯାଉ । ଆସନ୍ତା କାଲି ସେ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେବେ ।

ନଟିଆ ଆଉ ଜୋରଦେଇ ମନା କଲା ନାହିଁ । ଦେଖି ତାର ବଙ୍ଗଳାରେ ବିଶ୍ରାମ ନେଲେ ।

ପ୍ରଶସ୍ତ ବଙ୍ଗଳାର ପରିଚ୍ଛନ୍ନ ବାରଣ୍ଡା ଉପରେ ନଟିଆ ଗଡ଼ାଇଦେଲା ତାର କ୍ଳାନ୍ତ ଶରୀରକୁ । ସ-ଶବ୍ଦରେ ଗତିଶୀଳ ହେଲା ତାର ଶ୍ୱାସକ୍ରିୟା । ନିଦ୍ରା ନିଦ୍ରାରେ ନଟିଆର କ୍ଳାନ୍ତ ଅବୟବ ପାଇଲେ ବିଶ୍ରାମ ।

ସୁ-ସଜ୍ଜିତ ରଙ୍ଗିନ କୋଠରୀ । ବିସ୍ତୃତ ଫେନଶାର ଶଯ୍ୟା ଉପରେ ଘୂର୍ଣ୍ଣାୟମାନ ବ୍ୟଜନୀ । ନୀଳ ବିଦ୍ୟୁତାଲୋକରେ ଉଦ୍ଭାସିତ ତାର ଗର୍ଭ । ସୁଗନ୍ଧରେ ସୌରଭିତ ତାର ବାୟୁମଣ୍ଡଳ । ଅତିକାୟ ଦର୍ପଣମାନଙ୍କରେ ତାଙ୍କର ସୁ-ଶୋଭିତ ଅବୟବର ପ୍ରତିବିମ୍ବ । ସେଇଠି ତାଙ୍କର କୋମଳ ଅଙ୍ଗଲତାକୁ ଲଟେଇ ଦେଲେ । ବହୁ ମୂଲ୍ୟର ଚଦରଟିକୁ ଅବାଧ ଯାଏଁ ଆବୃତ କଲେ । ବିଦ୍ୟୁତ ସ୍ରୋତକୁ ଛିନ୍ନକରି ତମସାର କୋମଳ ନିଦ୍ରିତ ହେବାପାଇଁ ଚେଷ୍ଟିତ ହେଲେ । ସ୍ମୃତିରେ ପ୍ରବେଶ କଲା ଚିତ୍ରିତ ପୁଷ୍ପର ଅକୁହାକଥା । ଭୟରେ କମ୍ପମାନ ହେଲା ଆପାଦ ମସ୍ତକ । ମୁଖ ମଣ୍ଡଳର ଅବଶିଷ୍ଟାଂଶକୁ ଆବୃତ କରିବା ପାଇଁ ଉଦ୍ୟତ ହେଲେ, କିନ୍ତୁ ପାରିଲେ ନାହିଁ ।

ସେ ଅନୁଭବ କଲେ କଙ୍କାଳଟିଏ ତାଙ୍କ ଅଙ୍ଗକୁ ମାଡ଼ି

ଅସ୍ପଷ୍ଟ। ହାତରେ ତାର ପିନ୍ଧିଲ। ଗୁଳ ଉଦ୍‌ଗୀର୍ଣ୍ଣର ସମସ୍ତ ଲକ୍ଷଣ ଦେଖାଯାଉଛି।

ସୁନନ୍ଦାଙ୍କ ଉପରେ ଦୃଷ୍ଟି ପଡ଼ିଲା କଙ୍କାଳ ଆରମ୍ଭ କଲା ଉତ୍କଟ ଅଟ୍ଟହାସ୍ୟ। ଭୟରେ କମ୍ପି ଉଠିଲେ ସୁନନ୍ଦା। ତୁମକୁ ଗୁଳ କରିବା ପ୍ରୟାସ ମୋର ନାହିଁ। "ମୁଁ ପାପୀ ନୁହେଁ। ମୁଁ କୃତଘ୍ନ ନୁହେଁ। ମୁଁ ଏହି ପ୍ରେତ ପୁରୀର ରାଜା। ମୋର ହାଡ଼, ମାଳାର ମୁକୁଟ ନାହିଁ। ମୋ ଦେହରେ ମାଂସ ନାହିଁ ରକ୍ତ ନାହିଁ। ମୋର ସମସ୍ତ ଅବୟବ ଜୀର୍ଣ୍ଣ। ମୋର ପ୍ରାଣର ପ୍ରତ୍ୟେକ ସ୍ନାୟୁ ଛିନ୍ନ। ଜୀବନ ମଧ୍ୟ ନାହିଁ। କାହିଁକି ଡରୁଛ ? ଦେଖ, ତୁମର ଅଙ୍ଗକାନ୍ତି ପାଖରେ ମୁଁ କେତେ ନଗଣ୍ୟ।"

ଏତେବେଳେ ସୁନନ୍ଦା ବିସ୍ମିତ ହେଲେ। ଗୋଟିଏ କଙ୍କାଳ ତାଙ୍କର ନାମ ଉଚ୍ଚାରଣ କରିପାରେ। ଯୌବନର ଲାବଣ୍ୟ ବର୍ଣ୍ଣନା କରିପାରେ!!

ସୁନନ୍ଦା ରୋଗଗ୍ରସ୍ତ ମାନବୀ ପରି ଥରି ଉଠିଲେ। କଙ୍କାଳର ତୁଳନାତ୍ମକ ବାଣୀ ଶୁଣିବାକୁ ଚାହୁଁନଥିଲେ ସେ। କର୍ଣ୍ଣଦ୍ୱୟକୁ ସ-ଜୋରରେ ଚାପି ଧରିଲେ। ତଥାପି କଙ୍କାଳର ଧ୍ୱନି ପ୍ରବେଶ କଲା କର୍ଣ୍ଣ ଗହ୍ୱରର ଅଭ୍ୟନ୍ତର ପ୍ରଦେଶରେ। ମୁଖ ଓ ଆଖିରୁ ନିର୍ଗତ ହାଲୁ ହାଲୁ ତେଜରେ ହେଲେ ଧୈର୍ଯ୍ୟଚ୍ୟୁତ।

କଙ୍କାଳ ଗର୍ଜି ଉଠି କହିଲା—ଦେଖ ସୁନନ୍ଦା, ବାହାର ସ୍ନିଗ୍ଧ ଜ୍ୟୋତ୍ସ୍ନା, ଶୀତଳ ସମୀର ପରଶରେ ବଗିଚାର ପୁଷ୍ପିତ ଉଦ୍ୟାନ କେମିତି ସ-ଗର୍ବେ ତରଙ୍ଗାୟିତ ହେଉଛି। ନିଶାଚରଗଣ

ଉଚ୍ଛ୍ୱସିତ ଆନନ୍ଦରେ ଅଙ୍ଗଭଙ୍ଗୀର ପ୍ରତିଯୋଗିତା କରୁଛନ୍ତି । ହେଇ ଦେଖ ସେହି ନଭସ୍ପର୍ଶୀ ବିଶାଳ ବଟ ବୃକ୍ଷର ବିସ୍ତାରିତ ବାହୁ, ଯେଉଁଠି ଅସଂଖ୍ୟ ନରକଙ୍କାଳ ଗଢ଼ିଛନ୍ତି ତାଙ୍କର କ୍ରୀଡ଼ା ପ୍ରାଙ୍ଗଣ । ଏଇ ଦେଖ ମୋର ଅଙ୍ଗୁଳି ନିର୍ଦ୍ଦେଶରେ କେମିତି ଘୂରି ବୁଲୁଛନ୍ତି ନିଷ୍ପ୍ରାଣ କଙ୍କାଳ ।

ସୁନନ୍ଦା ଅନୁଭବ କଲା—ଯେମିତି ଅସଂଖ୍ୟ କଙ୍କାଳ ତାଙ୍କୁ ଘେରି ଯାଉଛନ୍ତି । ଶୁଷ୍କ ଦାନ୍ତଗୁଡ଼ିକ ମେଲାଇଦେଇ ତାଙ୍କୁ ଉପହାସ କରୁଛନ୍ତି ।

ଭୟ କର ନାହିଁ ସୁନନ୍ଦା ! ସେମାନେ ନିଷ୍ପ୍ରାଣ । ତାଙ୍କର ହୃଦୟରେ ଆବିଳତା ସ୍ପର୍ଶ କରିନାହିଁ । କାଳର କ୍ରୂର କବଳରେ ନିଷ୍ପେଷିତ ହୋଇ ଆଜ ରକ୍ତ ମାଂସ ହୀନ ହୋଇଛନ୍ତି ସତ, କିନ୍ତୁ ସେମାନେ ମୋର ପ୍ରିୟ ପ୍ରଜା । ଆଦେଶ ଲଙ୍ଘନର ସାହାସ ସେମାନଙ୍କର ନାହିଁ ।

ଏଇ ଦେଖ ସେଇ ନାଲି ରଙ୍ଗର କଙ୍କାଳମିସ୍ର ସୌଦାମିନୀ । ଅପୂର୍ବ ତେଜ ତାଙ୍କର ଥିଲା । ତୁମ ପରି ସୁନ୍ଦରୀ ଠାରୁ ଢ଼େର ସୁନ୍ଦର ଥିଲା ତାଙ୍କର ଅଙ୍ଗ ସୌଷ୍ଠବ । ଅପର ପଞ୍ଚ ବୟସରେ ଜ୍ଞାନଶୂନ୍ୟ ହୋଇ ହେଲା ପ୍ରେତପୁରୀ ନିବାସୀ ।

ଯମଦୂତ ଗଣ ତାଙ୍କୁ ଟାଣି ନେଇଗଲେ ଯମାଳୟକୁ । ଚିତ୍ର ଗୁପ୍ତ ଓଲଟାଇଲା ତାର ପଞ୍ଜିକା । କିନ୍ତୁ ପାଇଲା ନାହିଁ ଏହି ଷରଳା କନ୍ୟାର ନାମ । ନିର୍ଦ୍ଦେଶ ଦେଲେ ଏ ଅକାଳ ମୃତ୍ୟୁପାଇଁ ହେବ ସ୍ୱତନ୍ତ୍ର ବିଚାର । ଯେତେବେଳେ ଯମ ଦରବାରରେ ତାର

ବିଶ୍ୱ ବିସ୍ମିତ ହେବ ସେତେବେଳେ ସେ ତାର ନିଷ୍ପାପତାର ପରିଚୟ ଦେବ । ଯେଉଁମାନେ ତା ଉପରେ ବଳ ପୂର୍ବକ ପାଶବିକ ଅତ୍ୟାଚାର ଆରମ୍ଭ କରିଥିଲେ ସେମାନଙ୍କୁ ଯମରାଜ ନିକ୍ଷେପ କରିବେ ଉତ୍ତପ୍ତ ତୈଳକୁଣ୍ଡ ଗର୍ଭକୁ । ତୈଳକୁଣ୍ଡ ମଧ୍ୟରେ ସେମାନଙ୍କର ଆତ୍ମା ହେବ କଲବଲ । ପାପୀଏ କରିବେ ଆର୍ତ୍ତନାଦ । କିନ୍ତୁ ଅଟ୍ଟହାସ୍ୟରେ ଯମରାଜ ସେ ଆର୍ତ୍ତନାଦକୁ କରିବେ ପ୍ରତ୍ୟାଖ୍ୟାନ ।

ପାପୀମାନେ କିଏ ଜାଣ ? ଉଚ୍ଚ ଶିକ୍ଷିତ, ଧର୍ମୀ ପରିବାରର ସନ୍ତାନ ବର୍ଗ । ତାର ବିକଳ କ୍ରନ୍ଦନ ଧ୍ୱନିରେ କେହି ବିଚଳିତ ହୋଇ ନଥିଲେ । ନିଷ୍ପାପ ବାଳିକାର ପ୍ରାଣ ବାୟୁ ଶେଷରେ ନିର୍ବାପିତ ହେଲା । ପାଣୁଆ ତାକୁ ନେଇ ପୋତି ଦେଇଥିଲା ସେହି ବଟବୃକ୍ଷ ତଳେ । ଦେଖ କେମିତି କାନ୍ଦୁଛି । ଗୋଟିଏ ଅତୃପ୍ତ ଆତ୍ମାପାଇଁ ଏ ବାୟୁମଣ୍ଡଳ କିମିତି ମ୍ଳାନ ଦେଖାଯାଉଛି ।

ଏଇ ଦେଖ ଅଧ୍ୟାପିକା ଦାସ । ଭଦ୍ର ମହିଳା ହିସାବରେ ଉପନ୍ୟାସ ଲେଖିକା ହିସାବରେ ଥିଲା ତାଙ୍କର ଖ୍ୟାତି । ତାଙ୍କୁ ଭୂମେ ନଇଁ ତାରିଫ କରିଥିଲେ । ଯେଉଁଦିନ ଖବର କାଗଜରେ ପ୍ରକାଶ ପାଇଲା ଅଧ୍ୟାପିକା ଦାସ ନିରୁଦ୍ଦିଷ୍ଟା ସେତେବେଳେ ଶିକ୍ଷା ଜଗତରେ କେମିତି ଏକ ବ୍ୟାକୁଳତା ପ୍ରକାଶ ପାଇଥିଲା । କିନ୍ତୁ କେତେ ବଡ଼ କଥାଟା ବର ଗଛର ଶୀତଳ ଗୁମ୍ଫାରେ ଲୁଚି ରହିଗଲା । ସୁଶ୍ରୀ ଦେହରୁ ଅବାଞ୍ଛିତ ସ୍ୱାଦ ପାଇବାପାଇଁ ପ୍ରତାରଣା କରି I. A. S. ଆଉ I. F. S. ଅଫିସର ମାନେ କେମିତି ଅତ୍ୟାଚାର ଆରମ୍ଭ କରିବାକୁ ଯାଇ ହିଂସ୍ରକ ହୋଇ ଉଠିଥିଲେ । ତାହା ଦେଖି ଅଧ୍ୟାପିକା ଦାସ ଅନ୍ୟ ଉପାୟ ନପାଇ ଜିହ୍ୱା କାମୁଡ଼ି ଆତ୍ମହତ୍ୟା କରିଥିଲେ ଏଇ ବଂଗଳାରେ, ଆଉ ପାଣୁଆ

ତାର କାମ କରିବାକୁ ଯାଇ ସେ ନର୍ସଙ୍କ ଶବକୁ ଆଶ୍ରୟ ନେଲ ସେଇ ବରଗଛ ତଳେ ।

ସେମାନଙ୍କ ପାଇଁ ଯମରାଜା ସଜାଡ଼ି ରଖିଛନ୍ତି ନର୍କ । ତାଙ୍କ ଆଗରେ ସେମାନେ ନିଜକୁ ଉଚ୍ଚ ପଦସ୍ଥ କର୍ମଚାରୀ ବୋଲି ଦାବୀ କରିପାରିବେ ନାହିଁ । ସେମାନଙ୍କର ମସ୍ତକ ହେବ ଶତଧା ଛିନ୍ନ । ଗଣ୍ଡି ଦେଶର ମାଂସପେଶୀ ହେବ ଖଣ୍ଡ ବିଖଣ୍ଡ । ଆଉ ଖାଣ୍ଟି ହେବ ଶାଗୁଣାର ଜଠର ଦେଶରେ । ପଦବୀର ଗର୍ବଗାନ କଲେ ବକ୍ଷରେ ବନ୍ଧା ହେବ ଲୌହ ଶିକଳ । ସେମାନଙ୍କର ସଂପୂର୍ଣ୍ଣ ଅର୍ଥ ମୁକ୍ତି ପାଇଁ ଉତ୍କଳିତ କରିନପାରେ ।

ଏଇ ଦେଖ ଗ୍ରାମ ସେବିକା କମଳା । ତାକୁ ପ୍ରତାରିତ କରି ମନ୍ତ୍ରୀ, ମହାମନ୍ତ୍ରୀ, ଉପମନ୍ତ୍ରୀ ଦୋଷୀରୂପେ ସାବ୍ୟସ୍ତ ହୋଇଛନ୍ତି । ଯମରାଜା ତାଙ୍କର କୈଫିୟତ ତଲବ କଲାପରେ ତାଙ୍କର ପୃଷ୍ଠ ଉପରେ ଝୁଲିବ ବିରାଟ ହସ୍ତୀ । ହସ୍ତୀର ପ୍ରଚଣ୍ଡ ଆଘାତରେ ଚୂର୍ଣ୍ଣି ଭୂତ ହେବ ସେମାନଙ୍କର ବିକଶିତ ଅଙ୍ଗ ପ୍ରତ୍ୟଙ୍ଗ । ଆଉ ସେହି କାର୍ଯ୍ୟାନ୍ତର ଶବକୁ ନେଇ ପୋତି ଦେଇଥିଲା ପାଣୁଆ ଏଇ ବରଗଛ ତଳେ ।

ଏଇ ଦେଖ ନର୍ସ ଅନୁସୂୟା । ପରିବାର ନିୟନ୍ତ୍ରଣ ଯୋଜନାକୁ ସଫଳ କରିବାକୁ ଯାଇ ଏକ ଘନଜଙ୍ଗଲର ଏଇଠି ସମାଧିସ୍ଥ ହେଲା, ଏଇ ପାଣୁଆ ହାତରେ । ତାକୁ ଅପେକ୍ଷା କରି କରି ତାର ଅନ୍ଧ ବୃଦ୍ଧା ମାତା ଭେଟିଲା ମୃତ୍ୟୁ ଏଇ ପ୍ରେତଭୂମିରେ । ଯମାଳୟର ନର୍କରୁ ମୁକ୍ତି ପାଇବେ ନ ସେମାନେ ସେମାନଙ୍କର ଦେହର ଚମଡ଼ାକୁ ଉଖୁରି ତା ଉପରେ ପ୍ରୟୋଗ ହେବ ଲଙ୍କାର ଗୁଣ୍ଡ

ଜ୍ୱାଳା । କଳ୍ପବଲ୍ଲରେ ଅନୁତାପ କରିବେ ସେମାନେ । ତଥାପି ନିକ୍ଷିପ୍ତ ହେବେ ଜଳନ୍ତା ଅଗ୍ନିକୁଣ୍ଡ ମଧ୍ୟକୁ । ସେତେବେଳେ ଅନୁଭବ କରିବେ ଭଣ୍ଡାମୀର ଆଧିକ୍ୟ, ପାଷାଣ୍ଡ-ତାର କୁଫଳ ।

ଏଇ ଦେଖ ମହାବିଦ୍ୟାଳୟର କୃଷ୍ଣ ସୁନ୍ଦରୀ ପ୍ରମିଳା । ଚଳଚିତ୍ର ଦର୍ଶନ କରିବାକୁ ଆସି ଦର୍ଶନ ଦେଲା ଏଇ ପ୍ରେତପୁରୁଷ । ପିତା ମାତା ପୋଲିସକୁ ଖବର ଦେଲେ, ପୋଲିସ କଲା କଣ ? ପୋଲିସ ହତ୍ୟାକାଣ୍ଡରେ ହେଲେ ସ୍ୱର୍ଗ ଦ୍ୱାର । ଶେଷରେ ନିରସ୍ତ ହୋଇ ରହିଲେ ପିତା ମାତା ତାର, କିନ୍ତୁ ଆଜି ପ୍ରମିଳା ତାଙ୍କୁ ଝୁରୁଛି । ତଥାପି ପାରିନ । ତା ପାଇଁ ସେଇ ପାଷାଣ୍ଡମାନେ ପାଇବେ ଯମାଳୟରେ କଠୋର ଶାସ୍ତି । ଶତ ଶତ ବୃଶ୍ଚିକର ଦଂଶନରେ ଜଳି ଉଠିବ ତାଙ୍କର ଖାଅନ୍ତା ଶରୀର । ଠେଲି ଦିଆଯିବ ଭୟଙ୍କର ହିଂସ୍ର ଜନ୍ତୁର ସମ୍ମୁଖକୁ । ଦନ୍ତ, ନଖ ଆଘାତରେ କ୍ଷତ ବିକ୍ଷତ ହେବ ଶରୀର ସେମାନଙ୍କର । ତାପରେ ଯମ ଦୂତଗଣ ଘୋସାରି ଘୋସାରି ଟାଣି ନେବେ ମରୁଭୂମିର ଉଷ୍ମ ବାଲୁକା ରାଶି ଉପରେ । ଗୁଣ୍ଡାମୀ ଓ ଭଣ୍ଡାମୀର ଦର୍ପ ହେବ ଚୂର୍ଣ୍ଣ । ଆଉ ସେହି ଶବକୁ ନେଇ ପାଣୁଆ ପୋତି ଦେଇଥିଲା ଏଇ ବରଗଛ ମୂଳେ । ପାଣୁଆ ବାଟା ବଣ ପାଲଟି ଯାଇଥିଲା ନବାବ । ନବାବ ଢଙ୍ଗରେ ମଧ୍ୟ ଚଳୁଥିଲେ ତାର ପରିବାର ବର୍ଗ ।

ସେ ଦିନ ମଧ୍ୟ ସେମିତି ପାଣୁଆ ପାଇଲା ମୋଟା ଅର୍ଥ । ନର୍ତ୍ତକ ଶବଟିକୁ ନେଇ ନିଖୋଜ କରିବା ପାଇଁ ପାଣୁଆ ହେଉଥିଲା ତତ୍ପର । ଶୀଘ୍ର ଶୀଘ୍ର ଗାତଖୋଳି ପୋତି ଦେବାପାଇଁ ବ୍ୟଗ୍ର ହୋଇ ଉଠିଲା ସେ । ଲଣ୍ଠନ ଟେକି ଦେଖିଲା ଯୁବକଟିକୁ । ସେଇଠି ତାର ହୃତ୍ପିଣ୍ଡର ଗତି ହେଲା ବନ୍ଦ । ନିଜେ ମଧ୍ୟ ସମାଧି

ପାଇଲା ସେଇଠି । ପାଣୁଆ ତାର ନିର୍ମମ ହସ୍ତରେ କେତେ ଅବଳାକୁ ଦେଇଥିଲା ସମାଧି । କିନ୍ତୁ ସେ କଣ ଭାବିଥିଲା ତାର ବିବାହିତ ଯୁବତୀ କନ୍ୟାକୁ ଦିନେ ଅର୍ଥ ଲୋଭରେ କବର ଦେବାକୁ ପଡିବ ? ଏଇ ଜଙ୍ଗଲରେ ଗାଇ ବୁଲୁଥିଲା ଉଦ୍ଦାମ ସଙ୍ଗୀତ । କିଏ ବା ଜାଣେ ସେ ପାଣୁଆର କନ୍ୟା ? ପାଣୁଆର ନିବିଡ ଘଣିଆକୁ ସମସ୍ତେ ଥୁ-ଥୁ କଲେ । ଆଜି ପ୍ରେତପୁଞ୍ଜରେ ଅଙ୍ଗୁଆଁ କରି ରଖିଛନ୍ତି ତାକୁ । ଆସନ୍ତା କାଲି ଯମ ରାଜାଙ୍କ ନିକଟରେ କୈଫିୟତ ଦେବ । ତାକୁ ହିଂସ୍ର ଜନ୍ତୁର ଶିକାର ହେବାକୁ ହିଁ ଆସିବ ।

ଆଉ ମୁଁ ହେଉଛି ପ୍ରେତ ପୁଞ୍ଜର ରାଜା । ମୋ କଥା ମଧ୍ୟ ବିଚିତ୍ର । ପିସ୍ତଲ ଅଛି ମୋର ସାକ୍ଷୀ । ଯମାଳୟରେ ଏହି ପିସ୍ତଲ ଝଣ୍ଡିକ କରିବ ଉନ୍ମୋଚିତ । ଗମ୍ଭୀର ସ୍ୱର ଉତ୍ତୋଳନ କରି ଯୁକ୍ତି କରିବ ଦୋଷୀର ଉପଯୁକ୍ତ ଶାସ୍ତି ପାଇଁ । ଆଜି ସେ ଶାସ୍ତି କିଏ ପାଇବ ? ଆଉ ଅଳ୍ପ ସମୟ ପରେ ପାଇବ ତାର ଉତ୍ତର ।

ବର୍ତ୍ତମାନ ତୁମେ ବିଶ୍ୱରର ସମ୍ମୁଖୀନ ହେବାକୁ ପଡିବ । ତୁମର ଅଙ୍ଗ କାନ୍ତି ଆଜି ଉଦ୍ଭାସିତ । ତୁମର ନିତମ୍ବର ଆକର୍ଷଣରେ ଯୁବକ ହେଉଛି ଅନୁଗାମୀ । ତୁମର ବିହ୍ୱଳ ବଚନରେ ପ୍ରାଣୀ ହେଉଛି ପାଗଳ । ତୁମର ସାନ୍ନିଧ୍ୟ ପାଇଁ କେତେ ପ୍ରତିଦ୍ୱନ୍ଦ୍ୱୀ । ଏ ସୁଯୋଗରେ ତୁମେ ବୁଣି ଚାଲିଛ ବିଷର ବୀଜାଣୁ । ଆଉ ତୋଳିଛ କେତେ ଜୀବନରେ ରୋଗର ମନ୍ଦିର । କିନ୍ତୁ କାହିଁ ତୁମର ନାଗର, ସଖୀର ? ହୃଦୟରେ ବିଷ ଭରି ଆଉ କେତେ ଦିନ ଅମୃତ ବିତରଣର ଛଳନା କରିବ । କୁହ ସେଦିନ ପୂର୍ଣ୍ଣିମା ରାତିର କାହାଣୀ । ସ୍ୱାମୀଙ୍କ ମନରେ ହସ ଫୁଟାଇବାକୁ ଆସି ଫୁଟାଇ ଦେଲ ତାଙ୍କ ଛାତିରେ ଗୁଳି !

ଯେଉଁନାରୀ ହୀରା, ନୀଳା, ମୋତି, ମାଣିକ୍ୟର ଆକର୍ଷଣରେ ନିଜର ବିବାହିତ ସ୍ୱାମୀଙ୍କଠାରୁ ଲମ୍ପନ ଦେଇ ଅବୈଧ ପୁରୁଷ କୋଳରେ ତୃପ୍ତ ଆତ୍ମହରା ସେ ନାରୀର ପ୍ରତିଷ୍ଠା ନିଶ୍ଚିତ ଭାବେ ଅଗଣିର, ଅସ୍ୱାଭାବିକ, ନିନ୍ଦନୀୟ । ଦିନେ ପାଶ୍ଚାତ୍ୟ ଜଗତରେ ଏହାଥିଲା ଏକ ନିତି ଦିନିଆ ସମାଚାର । ସେଥିପାଇଁ ବର୍ତ୍ତମାନ କେତେ ଗବେଷଣା, କେତେ ମନ୍ତ୍ରଣା ! ସେ ଦେଶରେ ଘଟିଛି ନୈତିକତାର ବିଲୁପ୍ତି । ନୈତିକତାର ସୁରକ୍ଷା ପାଇଁ ହେବ ଆଇନ । ଅସଞ୍ଜମୀର କ୍ରୀଡ଼ା ପ୍ରାନ୍ତର ହେବ ସଂକୀର୍ଣ୍ଣ ।

କାହାର କ୍ଷଣିକ ପ୍ରତାରଣାରେ ଭୁଲିଗଲ ତୁମେ ସ୍ୱାମୀଙ୍କୁ । ହସ ଫୁଟାଇବାକୁ ଯାଇ ଯୋନର ଗୁଳିରେ ତୁମ ସ୍ୱାମୀଙ୍କୁ କଲ ଗୁଳି ବିଦ୍ଧ । ପତ୍ନୀର ସମ୍ମୁଖରେ ନିର୍ଦ୍ଦୟ ଭାବରେ ନିର୍ବାପିତ ହେଲ ସ୍ୱାମୀର ପ୍ରାଣ ପ୍ରଦୀପ ।

ଦୃଷ୍ଟି ବୁଲାଇ ପୁଣି ଥରେ ପର୍ଯ୍ୟବେକ୍ଷଣ କର ସେଇ ପଲଙ୍କର ଅଣୁ ପରମାଣୁକୁ; ଆଘ୍ରାଣ କର ସେଇ ନିର୍ଜୀବ ଲୌହ ଦଣ୍ଡକୁ । ପାଇବ ତୁମ ସ୍ୱାମୀଙ୍କର ରକ୍ତର ବାସ୍ନା ଓ ଗନ୍ଧ । ପାଣୁଆର ଶତ ଚେଷ୍ଟା ସତ୍ତ୍ୱେ ପଲଙ୍କଟି ବିବର୍ଣ୍ଣ । ଏଇ ଯେଉଁ କୋଠରୀ ପ୍ରାଚୀର ହସୁଛି, ତାହା ଥିଲା ତୁମ ସ୍ୱାମୀର **ଉଷ୍ଣ** ରକ୍ତରେ ରଞ୍ଜିତ । ତାର ଦେହରେ ଚୂନର ପୂର୍ଣ୍ଣ ଲେପନ ଆଣି ଦେଇଛି ହସ । ବିଲୁପ୍ତ ହୋଇଛି ମଳିନତା । ତୁମେ ଏମିତି ଅଲକ୍ଷଣୀ ! ଯେଉଁ ନାରୀ ହତ୍ୟାରେ ଜଡ଼ିତ, ପୁଣି ସ୍ୱାମୀ ହତ୍ୟାରେ ଜଡ଼ିତ, ସେ ନାରୀ, ନାରୀ ନୁହେଁ; ରାକ୍ଷସୀ । ତୁମ୍ଭର ସ୍ୱାମୀଙ୍କୁ ପ୍ରେମିକ ହାତରେ ହତ୍ୟା କରାଇ ଖୁସିରେ ରହିପାରିବ ?

ଦେଖ ଏଇ ନଟିଆର ନଗ୍ନ ନଗ୍ନ ନନ୍ଦା, ଉଦ୍ଦାମ ଶ୍ମାସବଣ୍ଡା ଶ୍ୟା । ସକଳ ପ୍ରାଚୁର୍ଯ୍ୟରେ ଥାଇ ମଧ୍ୟ ତୁମର ତୃପ୍ତି ନାହିଁ । ଶାନ୍ତି ନାହିଁ । ନନ୍ଦା-ରକ୍ତରୁ ବଢ଼ିଛି ରକ୍ତ । ଆଜ କୈଫିୟତ ଦିଅ ।

ଆଜ ତୁମର ଗର୍ଭରେ ଅବୈଧ ସନ୍ତାନ ସଞ୍ଚାର କରୁଛି । ତୁମେ ବିଧବା, କାହିଁ ବିଧବାର ବେଶ ? ବର୍ତ୍ତମାନ ଅନୁତାପ କଲେ ମଧ୍ୟ କେହି ଶୁଣିବେ ନାହିଁ । ତୁମେ ଦୁଃଖରେ ଅଭିଭୂତ ହୋଇ ପ୍ରେତ ପୁରରେ ପ୍ରବେଶ କଲେ କେହି ତୁମକୁ ସ୍ୱୀକାର କରିବ ନାହିଁ ।

ନାରୀ ହୃଦୟ ଏତେ କଳୁଷିତ ! ବିଷପୂର୍ଣ୍ଣ ! ! ଜଣେ ନାରୀ ତାର ପ୍ରେମିକ ଦ୍ୱାରା ସ୍ୱାମୀକୁ ହତ୍ୟା କରି ସୁଖରେ ରହିବା ସ୍ୱପ୍ନ ଦେଖିପାରେ ? ମୁଁ ଆଜ ପ୍ରେତପୁରୀର ରାଜା । ଏଇ ଦେଖ ସେଇ ୭୭୧ ନମ୍ବର ପିସ୍ତଲ । ତୁମର ପ୍ରେମିକ ମୋର ଗୃହରେ ଗୁଳିଫୁଟାଇ ତୁମକୁ ଉପଭୋଗ କରିଥିଲେ । ତୁମର ସହଚରି ହେବାରୁ ପାଇଲେ ବିଷର ପ୍ରସାଦ । ଛିନ୍ନ ହେଲା ଯୌବନାଙ୍ଗ । ଭୟଙ୍କର ଯନ୍ତ୍ରଣା ଗ୍ରାସ କଲା ତାଙ୍କୁ । ଶେଷରେ ସେହି ୭୭୧ ନମ୍ବର ପିସ୍ତଲ ଦ୍ୱାରା ଆତ୍ମହତ୍ୟା କଲେ ଏଇ ବଙ୍ଗଳାରେ । ପ୍ରେତଗଣ ମୋର ବନ୍ଦୀ କଲେ, ଆଜ ଉଦ୍ଧାର କଲେ ଏଇ ପିସ୍ତଲକୁ । କୈଫିୟତ ହେବାକୁ ହେବ । ଚିତ୍ର ଗୁପ୍ତର ପଞ୍ଜିକାରେ ତୁମର ରହସ୍ୟ ଜଡ଼ିତ କାହାଣୀ ସୁ-ଉଜ୍ଜ୍ୱଳ ।

× × ×

ଭୟରେ ଥରି ଉଠିଲେ ସୁନନ୍ଦା । ଅଜ୍ଞାତର ସତ୍ୟ ଘଟଣା ଉଦ୍‌ଘାଟିତ ହେଲା ଏଇଠି । ମସ୍ତିଷ୍କ ହେଲା ଅଚଳ । ମାନସିକ

ଯନ୍ତ୍ରଣା ହେଉଥିଲା ପ୍ରବଳ । ଅର୍ଥ ଉପାର୍ଜନ ପାଇଁ ହେଲେ ବୀତସ୍ପୃହ । ଜୀବନ ଧାରଣ ହେଉଥିଲା ଅସମ୍ଭବ । ସେ ଖୁଞ୍ଜିଲେ ଜୀବନର ବିସର୍ଜନ । ଇଚ୍ଛା ହେଉଥିଲା ହିମାଳୟର ଉତ୍ତୁଙ୍ଗ ଶୃଙ୍ଗରୁ ଲମ୍ଫନ ଦେଇ ଚୂର୍ଣ୍ଣୀ-ଭୂତ କରିଦେବ ତାଙ୍କର ନିସ୍ୟଭର ଅସଫଳତା । ନୋହିଲେ ଅଭୁକ୍ତ ହୋଇ ଛଡ଼ି ଐହିକ ପାର୍ଥିବ ଶରୀର । ଫେନସାର ଶଯ୍ୟା ବିସର୍ଜନ କରି ସ୍ଥିର କଲେ ଶେଷ ନିଷ୍ପତ୍ତି ।

× × ×

ପ୍ରତ୍ୟୁଷର କାକଳି ନଟିଆର ଆଣିଦେଲା ଚେତନା । ନଟିଆ ତାର ପ୍ରାଥମିକ କାର୍ଯ୍ୟ ସମାପ୍ତ କରି ଟାଣିଲା ଧୂଆଁ । ଅପେକ୍ଷା କଲା ଦେଈଙ୍କର ଆଗମନକୁ । କିନ୍ତୁ ଦେଈଙ୍କର ସ୍ୱତଃ ଆଗମନ ହେଲା ନାହିଁ । ଉଚ୍ଚ ସ୍ୱରରେ ଦେଈଙ୍କୁ ତାର କେତେ ଡାକିଲା । ଉତ୍ତର ଫେରି ଆସିଲା ନାହିଁ । ନଟିଆର ସନ୍ଦେହ ଘନୀ-ଭୂତ ହେଲା । ଦୌଡ଼ିଲା ଥାନା ଆଡ଼କୁ । ପୋଲିସ ଭାଙ୍ଗିଲା ଅବରୁଦ୍ଧ କୋଠରୀର ଫାଟକ । ଆଉ ପାଇଲା ଦେଈଙ୍କର ଆତ୍ମ-ହତ୍ୟା ଜନିତ ଶବ । ଗଳାରେ ଫାଶ ଲଗାଇ ନିଜର ଜ୍ୱାଳାମୟୀ ଜୀବନର ଘଟାଇଛନ୍ତି ପରିସମାପ୍ତି । ଆଉ ଛାଡ଼ି ଯାଇଛନ୍ତି ସ୍ୱହସ୍ତ ଲିଖିତ ଚିଠି । "ମୋର ମୃତ୍ୟୁ ପାଇଁ କେହି ଦାୟୀ ନୁହନ୍ତି ।"

---

# ଶାନ୍ତି

## ସ୍ୱାମୀ ଉପରେ ସ୍ତ୍ରୀର ନୋଟିସ୍

### ତାଙ୍କର ମୁଖ୍ୟ ଦାବୀର ବିଷୟ ବସ୍ତୁ ଥିଲା —

ଆସନ୍ତା କାଲି ସନ୍ଧ୍ୟା ସୁଦ୍ଧା ସେପରି ଦୁଇ ଖଣ୍ଡ ବମ୍ବେ ମେଡ଼୍ ନାଇଲୋନ୍ ଶାଢ଼ୀ, ଗୋଟିଏ ଟ୍ରାଞ୍ଜିଷ୍ଟର, ଗୋଟିଏ ଓ୍ୱେଷ୍ଟଫରନ୍ ଲେଡିସ୍ ଓ୍ୱାଚ, ଖଣ୍ଡିଏ ମଣିପୁର ତିଆରି ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ନେକଲେସ, ଆଉ ଦୁଇ ଖଣ୍ଡ ସ୍ପଞ୍ଜ ଦିଆ ବ୍ରେଷ୍ଟ ଟାଇଟ୍ ; ମୋଡ଼ରନ୍ ଟ୍ୱଏଲେଟସ୍ ମାନେ ଲେକ୍‌ସ, କମ୍ବା ସେଣ୍ଡ୍ରାଲ ସୋପ କମ୍ବା କାଶୀର ସ୍ନୋ କମ୍ବା ପଣ୍ଡସ୍ ସ୍ନୋ ଇତ୍ୟାଦି, ଇତ୍ୟାଦି ତାଙ୍କର ଗୌଣ ଦାବୀ ଥିଲା ।

ଚମକ ପୂର୍ଣ୍ଣ ନୋଟିସ୍‌ଟି ରମେଶ ବାବୁଙ୍କୁ କମିତି ବୋଧ ହେଲା । ସ୍ୱପ୍ନା ଦେବୀଙ୍କର ସବୁ କିଛି ଅଛି, ତଥାପି ତାଙ୍କର ଦାବି ! କେଇଟା ସମୟ ପରେ ବାବୁ କଥାର ମଙ୍ଗକୁ ଧରିପାରିଲେ ।

ଜିନଷ ଗୁଡ଼ିକ ଟିକଏ ପୁରୁଣା ହୋଇ ଯିବା ପରେ ସ୍ୱପ୍ନା ଦେବୀ ସେଗୁଡ଼ିକୁ ବ୍ୟବହାର କରିବା ଅପମାନ ମନେ କରନ୍ତି ।

ଖୁବ୍ ଅଭିମାନିନୀ ସେ ।

ତାଙ୍କର ନୋଟିସରେ କୌଣସି ଅବହେଳା ହେଲେ ସେ ବାବୁଙ୍କଠାରୁ ଇସ୍ତଫା ଦେଇ ପାରନ୍ତି । ଇସ୍ତଫାକୁ ରମେଶ ବାବୁ ଖୁବ୍ ଡରନ୍ତି । ତିନି ଦିନର ଟେଲିଟା କଥାକୁ ନେଇ ବାବୁ ଏକା ବେଳକେ ଭାଙ୍ଗି ପଡ଼ନ୍ତି । ବର୍ତ୍ତମାନ ଯଦି ବାବୁଙ୍କଠାରୁ ଇସ୍ତଫା ଦିଅନ୍ତି ତେବେ ତାଙ୍କର ଚତୁର୍ଥ ଇସ୍ତଫା ପତ୍ର ହେବ । ଏହା ପୂର୍ବରୁ ସେ ତିନୋଟି ସ୍ୱାମୀଙ୍କୁ ତ୍ୟାଗ କରିଛନ୍ତି ।

ତେବେ ଅବହେଳାର ଆଉ ପ୍ରଶ୍ନ ନାହିଁ ।

ନୋଟିସ ଅନୁସାରେ ପ୍ରୋଗ୍ରାମ ପ୍ରସ୍ତୁତ ହେଲେ, ତା ବି ତାଙ୍କର ସ୍ୱେଚ୍ଛା କ୍ରମେ ନୁହେଁ, ସ୍ୱପ୍ନା ଦେବୀଙ୍କର ଆଦେଶ କ୍ରମେ ।

ସନ୍ଧ୍ୟାର ମୌସୁମୀ ଧୀରେ ଧୀରେ ସେମାନଙ୍କର କାର୍ କମ୍ପେ ବକ୍ଷରେ ଉଚ୍ଛଳ ଉଠିଲା । କଳା ପିଚ୍ ରାସ୍ତା ଉପରେ ଧଳା ଝକ୍ ଝକ୍ କାର୍‌ଟା ପବନ ବେଗରେ ଗତି କରୁଥାଏ । ତାରି ଭିତରେ ସେମାନଙ୍କର ଉଦ୍ଦାମ ଯୌବନ । ସୁନ୍ଦର ଚେହେରା ଉପରେ ସେମାନଙ୍କର ଟେମ୍ପ୍ଲେଟ ବୋଲା ମୁହଁ ଦୁଇଟା ଠିକ ସଦ୍ୟ ପ୍ରସ୍ଫୁଟିତ ଗୋଲାପ ଫୁଲ ପରି ଦେଖା ଯାଉଥାଏ । ସ୍ୱପ୍ନା ଦେବୀ ତାଙ୍କର ଗୌରରଙ୍ଗର ଚର୍ବିଳ ଶରୀରକୁ ବାବୁଙ୍କ ଉପରେ ଲଦି ଦେଇ କଟାକ୍ଷର ଦୀପ୍ତିରେ ବାବୁଙ୍କର ମନକୁ ମୁହୁର୍ମୁହୁଃ ଆକର୍ଷଣ କରନ୍ତି । ଦେବୀଙ୍କର ସାନ୍ନିଧ ତାଙ୍କ ପାଇଁ ଆଣି

ଦେଉଛନ୍ତି କେତେ ତୃପ୍ତି । ତର୍ଜିନ ଶରୀରର କୋମଳ ସ୍ପର୍ଶରେ ସେ ହୁଅନ୍ତି ଆତ୍ମହରା । ବାବୁ ଆଘ୍ରାଣ କରି ଗୁଳଚନ୍ଦ୍ର ସ୍ୱର୍ଣ୍ଣଙ୍କର ସୌରଭିତ ଗଣ୍ଡର ସୁଗନ୍ଧ । ସେ ଲୁହାନ୍ତି ସ୍ୱର୍ଣ୍ଣାଙ୍କର ସୌନ୍ଦର୍ଯ୍ୟକୁ ପାନ କରିଯିବେ, ଆଉ ଭୁଲି ଯିବେ ଏ ସଂସାରର ସବୁ କିଛି । ଗାଡ଼ି ଚକ ତଳେ ପଡ଼ି ଗୋଟିଏ ଆତ୍ମାର ବିଲୁପ୍ତି ଘଟିଲେ ସେ ବ୍ୟସ୍ତ ହେବେ ନାହିଁ । କିନ୍ତୁ ବେଶୀ ବ୍ୟସ୍ତ ହେବେ ଯଦି ସ୍ୱର୍ଣ୍ଣା ଦେବୀ ହେବେ ପାଖ ଛଡ଼ା । ନିଜ ସ୍ତ୍ରୀର ହସକୁ ଓଜନ କରନ୍ତି ବାବୁ । ଶେଷରେ ମନ୍ତବ୍ୟ ପ୍ରକାଶ କରି କହନ୍ତି—ଏ ଯୁଗର ହୀରା, ମାଳା, ମଣି ମୁକ୍ତାର ମୂଲ୍ୟଠାରୁ ତାଙ୍କର ହାସ୍ୟର ମୂଲ୍ୟ ବହୁ ଗୁଣରେ ବେଶୀ । ବସ୍ତୁବାଦ ଦୁନିଆଁର ଭାରାକ୍ରାନ୍ତ ଜୀବନରେ ଚିତ୍ତ ବିନୋଦ ପାଇଁ ଏ ମର୍ତ୍ତ୍ୟ ଭୁବନରେ ସ୍ୱର୍ଣ୍ଣାହିଁ ତାଙ୍କର ଏକ ମାତ୍ର ସାହା । ସ୍ୱାମୀଙ୍କ ମୁଖରୁ ସ୍ୱ-ପ୍ରଶଂସା ନିସୃତ ହେବା ପରେ ସ୍ୱର୍ଣ୍ଣା ଦେବୀ ଗୌରବ ଅନୁଭବ କରନ୍ତି । ମନେ ମନେ ସ୍ଥିର କରନ୍ତି ବାବୁ ପ୍ରକୃତରେ ତାର ତନୁଶ୍ରୀର ମୂଲ୍ୟକୁ ଯେମିତି ନିଜ ପକେଟରେ ଗୁଞ୍ଜି ଦେଉଛନ୍ତି । ଗୌରବ ସ୍ଫୀତା ସ୍ୱର୍ଣ୍ଣା ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହେ ତାଙ୍କର ଆଡ଼କୁ । ହାସ୍ୟ ଲହରୀକୁ ଅନେକ ସମୟ ପର୍ଯ୍ୟନ୍ତ ସଜୀବ ରଖିବା ପାଇଁ ଅକ୍ଳାନ୍ତ ଚେଷ୍ଟା କରେ । ଆଉ ସବୁ ବେଳେ ଚେଷ୍ଟା କରେ ଅନେକ ଚୁମ୍ବନର ଆଘାତରେ ବାବୁ ତାର ଫୁଲିଲା ଗଣ୍ଡଦେଶରେ ଭରି ଦିଅନ୍ତୁ ତୃପ୍ତି । ଭୁଲିଯାନ୍ତୁ ଏ ଦୁନିଆଁକୁ । କିନ୍ତୁ ତାଙ୍କର ସେ ପୋଷା ମାନନ୍ତି ।

ବାବୁଙ୍କୁ ପୋଷା ମନେଇବା ପାଇଁ ସ୍ୱର୍ଣ୍ଣା ଏମିତି କଥୋପକଥନରେ ଭିଡ଼ ଜମେଇ ଦେଇଥାନ୍ତି ଯେ ସେ ଭିଡ଼ କାଟି ବାବୁ ମନ୍ତବ୍ୟ ପ୍ରକାଶ କରିବାକୁ ସୁଯୋଗ ପାଉନଥିଲେ । ତଥାପି ସ୍ୱର୍ଣ୍ଣା

ତାଙ୍କର ନିଜ ପ୍ରାଥମିକ କୌଶଳରେ ଆଦାୟ କରି ନେଉଥିଲେ ।

ନିଯୋଗ କଥନରେ ଉତ୍ତ ନ ସରୁଣୁ କାରଟି ସହରର ଗୋଟିଏ ବଡ଼ କୋଠାର ସାମନାରେ ଲାଗିଲା ।

କୋଠା ଭିତରେ ଦୁନିଆଁ ଯାକର ଶାଢ଼ୀ । ଶିକ୍ଷା-ଭିମାନୀ ମହିଳାଙ୍କର ଭିଡ଼ ସେଇଠି । ନିଜ ନିଜ ଖୁସି ଅନୁଯାୟୀ ଲୁଗା କିଣା ଚାଲିଛି । ତଥାପି ସ୍ୱର୍ଣ୍ଣା ଦେବୀଙ୍କର ମନକୁ ପାଇଲା ଭଳି ଶାଢ଼ୀ ନାହିଁ । ଉମେଶ ବାବୁ ଅଡୁଆରେ ପଡ଼ିଲେ । ବମ୍ବେରେ ଶାଢ଼ୀ ନ ମିଳିଲେ କଲିକତାରୁ ମଗାଯାଇପାରିଥାନ୍ତା । କିନ୍ତୁ ସମୟ ନାହିଁ । ମାତ୍ର ବାବୁଙ୍କ ଇନଫ୍ଲୁଏନସ୍ ବଳରେ ଦୋକାନୀ ଦର୍ଶି ଦର୍ଶି ଗୋଦାମ ଘରୁ ଦେବୀଙ୍କର ମନ-ମୁତାବକ ଦୁଇ ଖଣ୍ଡ ଶାଢ଼ୀ ଦେଲେ । ସୁବିଧା ଅସୁବିଧା ଭିତରେ ତାଙ୍କର ଦାବୀ ହାସଲ କରି ନେଲେ ।

ତାପରେ ବଙ୍ଗଳା ଅଭିମୁଖେ କାରଟି ଫେରିଲା ।

× × × ×

ସେହି ବର୍ଷର ହା-ଅନ୍ନ, ହା-ଅନ୍ନର କରୁଣ ଧ୍ୱନି, ଅନ୍ତରୀକ୍ଷରେ ସୃଷ୍ଟି କରିଛି ବେପଥୁ । ଦୁର୍ଭିକ୍ଷ, ମରୁଡ଼ିର ପ୍ରକୋପ ସର୍ବହରାର ପ୍ରାଣରେ ସୃଷ୍ଟି କରିଛି ଆତଙ୍କ । ଆତଙ୍କିତ ମାନବଠାରୁ ଉଚ୍ଛୁଳି ଆସୁଛି ଆର୍ତ୍ତନାଦ । ଶେଷରେ ବରଣ କରୁଛି ଅକାଳ ମୃତ୍ୟୁ । ସମୂହ ମୃତ୍ୟୁ ଏ ଦେଶର ଜାତୀୟମାନ ପତାକାକୁ କରୁଛି ଆନତ । କିନ୍ତୁ ସ୍ୱର୍ଣ୍ଣା ଦେବୀଙ୍କର ଜନ୍ମ ଉତ୍ସବ ଖୁବ ଆଡ଼ମ୍ବରରେ

ହେଉଛି ପାଳତ । ଗୋଟିଏ ଦିଗରେ ହା-ଅନ୍ନର ବିକଳ ଧ୍ୱନି, ଅନ୍ୟ ଦିଗରେ ଜନ୍ମୋତ୍ସବର ଶଙ୍ଖ ଧ୍ୱନି; ବାହାରେ ବିଭୂଷିତ କଙ୍କାଳର କରୁଣ ଚିତ୍କାର, କିନ୍ତୁ ଅନ୍ତଃପୁରରେ ବିପୁଳ ନିତମ୍ବିନୀ ମାନଙ୍କର ସ୍ଫୀତ ବକ୍ଷର ଛନ୍ଦାୟିତ ନୃତ୍ୟ; ବାହାରେ ମୃତ କଙ୍କାଳର ଉତ୍କଟ ଦୁର୍ଗନ୍ଧ, ଭିତରେ ମିଷ୍ଟାନ୍ନର ମହକ, ପୁଷ୍ପବୀଥି ଓ ଆମୋଦ ତୈଳର ସୌରଭ । ବାହାରେ ଅଜ୍ଞାତର ସବଳ ମାନବ ପାଲଟିଛି ଶୀର୍ଣ୍ଣ କଙ୍କାଳ, ଅଥଚ ସ୍ତ୍ରୀ ହୋଇଛି ସ୍ୱାମୀର ଅନୁଗାମୀ । କିନ୍ତୁ ଭିତରେ ପରପୁରୁଷଙ୍କ ସହିତ ଲାସ୍ୟମୟୀଙ୍କର କେତେ ନୃତ୍ୟ, କେତେ କଟାକ୍ଷ, ତାର ଭିତରେ ସ୍ୱପ୍ନ । ଜଣେ ତଥା କଥିତ ପ୍ରଗତିଶୀଳା ନାରୀ । ତେଣୁ ସେ ସ୍ୱହାନ୍ତ ଅନେକ-ଙ୍କର ସ୍ପର୍ଶ, ଅନେକଙ୍କ ସହିତ ହାସ୍ୟ, ଅନେକଙ୍କ ସହିତ ଅଙ୍ଗ ବିନ୍ୟାସର ଗୌରବ ଉତ୍ସବର ଉଷ୍ମତା ତାଙ୍କ ଅ-ତରୁଣ ଓଷ୍ଠରେ ସୃଷ୍ଟି କରିଥିଲା ଅପର୍ଯ୍ୟାପ୍ତ ହସ ।

ରମେଶ ବାବୁ ବିରକ୍ତ ହୋଇ ଅଫିସରୁ ବଙ୍ଗଳା ଆଡ଼କୁ ତାଙ୍କର କାରଟିକୁ ଚଳାଇ ଥାନ୍ତି । ହଠାତ୍ ଧଳା ଝକ୍ ଝକ୍ କାରଟା ଭିକ୍ଷୁକମାନଙ୍କ ଆଖିରେ ଗଲା ନାହିଁ । ଭିକାରୀ ଦଳ ସୁବିଧା ଅନୁସାରେ ଢେଲା, ପଥର ନେଇ କାରଟି ଉପରେ ଅଗ୍ନୁ-ନକ ଭାବେ ଆକ୍ରମଣ କଲେ । ନୂଆଁ କାରଟିର ଅସ୍ତିତ୍ୱ ଲୋପ ପାଇଲା । ତା ସାଙ୍ଗକୁ ରମେଶ ବାବୁଙ୍କର ଜୀବନ ବି ବିପନ୍ନ ହେଲା । ମୁନିଆ ପଥର ଯାଇ ବାବୁଙ୍କର ମୁଣ୍ଡରେ ଗଳିଗଲା । ଦେହ ସାରା କାଚ ଖଣ୍ଡ ପଶି ଦେବ ମୂର୍ତ୍ତିକୁ କ୍ଷତ ବିକ୍ଷତ କରି ପକାଇଲା । ଗୋଟିଏ ଚକ୍ଷୁ ସମ୍ପୂର୍ଣ୍ଣ ଭାବରେ ନଷ୍ଟ ହୋଇଗଲା । କିନ୍ତୁ ଖୁବ୍ କୌଶଳରେ ବାବୁ କାରଟାକୁ ନିଜର ବଙ୍ଗଳାକୁ ନେଇ ଆସିଲେ ।

ସେତେବେଳକୁ ତାଙ୍କର ହୋସ ନ ଥିଲା ଭଳି ଜଣା ପଡ଼ୁଥିଲା । ବାବୁ ଅତି ଧୀରେ ଧୀରେ କାରରୁ ଓହ୍ଲାଇ ପଡ଼ି ନିଜ କକ୍ଷରେ ପ୍ରବେଶ କଲେ । ବାବୁଙ୍କର ଏ ଅବସ୍ଥାରେ ବଙ୍ଗଳାର ଉଷ୍ଣତା ହେଲା ହ୍ରାସ । ପ୍ରଗତିଶୀଳା ନିତମ୍ବିନୀଗଣ ହେଲେ ସ୍ତମ୍ଭୀଭୂତା । ସ୍ୱପ୍ନାଦେବୀ ହେଲେ ଉଠସ୍ଥା । ବାବୁଙ୍କର ଏହି ଦାରୁଣ ଦୁର୍ଦ୍ଦଶା ସ୍ୱପ୍ନାଦେବୀଙ୍କର ଇସ୍ପାତ ହୃଦୟରେ ଆଣିଲା ପରିବର୍ତ୍ତନ ।

କ୍ଷତ ସ୍ଥାନ ସବୁ ଜଳି ଉଠିଲା । ଆଉ ପ୍ରାଣର ଅଭ୍ୟନ୍ତର ପ୍ରଦେଶରେ ଭରି ଦେଲା ବେଦନା । ଉଚ୍ଛୁଳି ଉଠୁଥିବା ରକ୍ତର ସ୍ରୋତକୁ ଗୃପି ଦେଇ ବାବୁ ରୁଦ୍ଧ କଣ୍ଠରେ ପ୍ରକାଶ କଲେ—ସ୍ୱପ୍ନା ଆଜି ମୋର ଠିକ୍ ଶାସ୍ତି ହୋଇଛି ।

କେଉଁ କୁକର୍ମ ଯୋଗୁଁ ଏ ଶାସ୍ତି ଭୋଗିବାକୁ ପଡ଼ିଲା ? ଦୁଃଖର ସହିତ ଅନୁଧ୍ୟାନ କରିବାକୁ ଲାଗିଲେ ସ୍ୱପ୍ନା ଦେବୀ । ଛଳ ଛଳ ଆଖି ଦୁଇଟା ଆହୁରି ଛଳ ଛଳ ହେବାକୁ ଲାଗିଲା ।

ରୁଦ୍ଧ କଣ୍ଠକୁ ବାବୁ ଆଉ ଚପାଇ ରଖି ପାରିଲେ ନାହିଁ । ମୃତ୍ୟୁ ପୂର୍ବରୁ ଅତୀତର ଇତିହାସ ଖୋଲି ବସିଲେ । କରୁଣ କଣ୍ଠରେ କହିଲେ—ସ୍ୱପ୍ନ ଦେବୀ, ଆଜି ମୋର ଠିକ୍ ଶାସ୍ତି ହୋଇଛି, ହଁ ସ୍ୱପ୍ନାଦେବୀ ଠିକ୍ ହୋଇଛି । ସେଦିନର କରୁଣ ଦୃଶ୍ୟ, କେତେ ଘଣ୍ଟା ଲୁହ ଧାରକୁ ମୁଁ କରିଥିଲି ପ୍ରତ୍ୟାଖ୍ୟାନ । ଆଉ ପାଦରେ ଠେଲି ଦେଇଥିଲି ମୋର ପିତା ମାତାଙ୍କୁ । ସେହି ଦିନଠାରୁ ଲୁଚି ରହିଥିଲା ସର୍ବଗ୍ରାସୀ ବହ୍ନି । ଆଜି ସେହି ବହ୍ନି ହୋଇଛି ବଳୀୟାନ, ଆଉ ପ୍ରକାଶ କରିଛି ତାର ପ୍ରକୋପ ।

ଓଃ ସ୍ୱପ୍ନା ! ......ସ୍ୱ...ପ୍ନା ! ସେହି ଗର୍ବ ଆଜ ମୋତେ ଗ୍ରାସ କରିବା ପାଇଁ କେମିତି ଭୟ ଦେଖାଉଛି ! ବାବୁ ମୃତ୍ୟୁ ସୁନିଶ୍ଚିତ ବୋଲି ଜାଣିପାରି ଯନ୍ତ୍ରଣା ପୂର୍ଣ୍ଣ ଗଳାରେ କହିଲେ— ସ୍ୱପ୍ନା, ତୁମର ଅତୁଳନୀୟ ସୌନ୍ଦର୍ଯ୍ୟରେ ଭୁଲିଯାଇ ମୁଁ ମୋର ଗରିବ ପିତା ମାତା, ସ୍ନେହ ଭାଇ ଭଉଣୀ, ଜାତି, ସମାଜକୁ ତ୍ୟାଗ କରି ନିଜକୁ I, C. S, Officer ବୋଲି ପାଶ୍ଚାତ୍ୟ ଶିକ୍ଷା ବଳରେ ଗର୍ବ କରୁଥିଲି । ଆଜ ସେହି ଶିକ୍ଷା ମୋତେ ରଖି ପାରିବ ନାହିଁ । ସ୍ୱପ୍ନା ! ରଖି ପାରିବ ନାହିଁ । ହଁ ଠିକ୍ ଶାସ୍ତି ହେଉଛି । ନୋହିଲେ କେଉଁ ସ୍ୱୀର ଗାଡ଼ି ଚକ ତଳେ ଭିକାରୀର ମୃତ୍ୟୁ ଘଟିଲେ ସେମାନେ ଧଳା କାରକୁ ଲକ୍ଷ୍ୟ କରି ମୋର ଗାଡିକୁ କାହିଁକି ତେଲ୍ଲ ମାଡ କରିଥାନ୍ତେ ?

ବାବୁଙ୍କ ତୁଣ୍ଡରୁ କଥା ନ ସରୁଣୁ ସ୍ୱପ୍ନା ଦେବୀଙ୍କୁ ଆଉ କିଛି ଅବୁଝା ନ ଥିଲା । ସେହି ଦିନ ସ୍ୱପ୍ନା ଦେବୀ ତାଙ୍କର ବନ୍ଧୁ ଯୋହନଙ୍କ ସଙ୍ଗରେ ପ୍ରେମ ସୂତ୍ରରେ ଆବଦ୍ଧ ଥିଲେ । ପହଞ୍ଚିବାରେ ତାଙ୍କର ଟିକିଏ ବିଳମ୍ବ ହୋଇ ଯାଇଥିଲା, ତେଣୁ ଗ୍ରାଣ୍ଡ ରୋଡ଼ ଉପରେ ଏହି ଧଳା କାରଟିକୁ ପବନ ବେଗରେ ଉଡ଼ାଇ ନେଉ ଥିଲେ । ଯାହା ଫଳରେ ଗୋଟିଏ ଭିକାରୀ ଏହି କାର ଚକ ତଳେ ପଡ଼ି ଧୂଳି ସହିତ ମିଶି ଯାଇଥିଲା । କିନ୍ତୁ ଯୋହନ ଏବଂ ସ୍ୱପ୍ନା ଦେବୀଙ୍କର ଟଙ୍କା ସ୍ରୋତରେ ପୋଲିସର ମୁହଁ ବୁଜି ହୋଇ ଯାଇଥିଲା । ରମେଶ ବାବୁଙ୍କ କଣ୍ଠରୁ ଏ କଥା ବୁଝିପାରି ସେ ଥରିବାକୁ ଲାଗିଲେ । ଭୟରେ ତାଙ୍କର ଲୋମ ମୂଳ ରୋମାଞ୍ଚିତ ହେବାକୁ ଲାଗିଲା ।

ବାବୁ ଆତୁର କଣ୍ଠରେ କହିଲେ— ସ୍ୱପ୍ନା, ହଳଣ୍ଡ ସରକାର

ବ୍ୟାଙ୍କରେ ଲକ୍ଷେ ଟଙ୍କା, ଲଣ୍ଡନ ସରକାରୀ ବ୍ୟାଙ୍କରେ ଲକ୍ଷେ ଟଙ୍କା, ଆଉ ଦିଲ୍ଲୀ ଷ୍ଟେଟ ବ୍ୟାଙ୍କରେ ଲକ୍ଷେ ଟଙ୍କା ରଖିଛୁ । ସେହି ଚମଡ଼ା ବ୍ୟାଗରୁ ରସିଦ ବୁକ୍ ନେଇ ମୋର ସାନ ଭାଇ ଉମା କାନ୍ତକୁ ଦେବୁ । ଆଉ କହିବୁ ତୋର ଭାଇ ଆଉ ନାହିଁ । ତାର ଯେମିତି କର୍ମକୁ ସେମିତି ଶାସ୍ତି ପାଇ ଚାଲି ଯାଇଛି । ଆଉ ଆଶ୍ୱାସନା ଦେଇ କହିବୁ ତାକୁ ସ୍ନେହରେ ରଖି ଦେଇଛି ବୋଲି ଦୁଃଖ କରିବ ନାହିଁ । ଏହି ତିନ ଲକ୍ଷ ଟଙ୍କା ନେଇ ଏହି ବଙ୍ଗଳାରେ ରହି ପଢ଼ିବ, ଆଉ ଦିନେ ମଣିଷ ହୋଇ ମଣିଷ ପରି କର୍ତ୍ତବ୍ୟ କରିବ ।

ଓଃ..., ଓଃ, ସ୍ୱପ୍ନା ଯା, ହଁ ମୋର ଗାଁକୁ ଯାଇ ପିତା ମାତାଙ୍କୁ କହିବୁ—ଦିନେ ଉମା କାନ୍ତକୁ ପଢ଼ାଇ ମଣିଷ କରିବେ । ନା ସ୍ୱପ୍ନା, ଏମିତି ବି କହିବୁ ନାହିଁ । ତେବେ ସେମାନେ ମାରି ପକାଇବେ, ହାଣି ଦେବେ । ମୋ ପାଇଁ ସେମାନେ କଣ ନ କରିଥିଲେ ! ହଳ ବଳଦ ଧରି ଉପବାସ ରହି ମୋତେ ସୁଦୂର ପଲ୍ଲୀରୁ କଟକ ସହରରେ ପାଠ ପଢ଼ାଉଥିଲେ । ଶେଷରେ ଘର ଦ୍ୱାର ଗାଁ ମହାଜନଙ୍କଠାରେ ବନ୍ଧକ ଦେଇ ମୋତେ ଲଣ୍ଡନ ପଠାଇଥିଲେ । ସତ କଣ ସେମାନେ ବଞ୍ଚିଥିବେ !! ସ୍ୱପ୍ନା ମୋର ମନେ ହେଉଛି ଯେତେବେଳେ ମୁଁ କଟକରେ ପଢ଼େ ସେତେବେଳେ ଉପବାସ ନିର୍ଯ୍ୟାତନାରେ ସତି ତାଙ୍କ ଦେହରେ ମାଂସ ନ ଥିଲା । ଥିଲା କେବଳ କେତେ ଖଣ୍ଡ ଅସ୍ଥି । ଅଫିସର ହୋଇ ମୁଁ ସେମାନଙ୍କୁ ଭୁଲି ଗଲି । ଶାସ୍ତି ମୁଁ ଭୋଗ କରିବନି ତ କରିବ କଏ ?

ହଁ ସ୍ୱପ୍ନା ଯା, ଚଞ୍ଚଳ ଯା । ଉମାକାନ୍ତ ମୋର ସ୍ନେହରେ

ହଟ ଘଟ ହେଉଥିବ । ମୁଠାଏ ଭାତ ପାଇଁ ଏ ଦ୍ୱାର ସେ ଦ୍ୱାର ହେଉଥିବ । ସମସ୍ତେ ଛି, ଛି କରୁଥିବେ । ଉଲଗ୍ନ ଶରୀର, ମଳିନ ବେଶରେ ଉମାକାନ୍ତ ମୋର କଦାକାର ଦେଖାଯାଉଥିବ । ସ୍ୱପ୍ନା ଯଦି ପାରୁ ଚଞ୍ଚଳ ଉମାକାନ୍ତକୁ ନେଇ ଆସିବୁ ।

ବଡ଼ ବଡ଼ ଡ଼ାକ୍ତର ଡକେଇ ଆସିଲେ । ଚିକିତ୍ସାର ବନ୍ଦୋ-ବସ୍ତ କରାଗଲା । କିନ୍ତୁ ବାବୁ ଆଉ ବଞ୍ଚିବେ ଏହାର ନିର୍ଭର ପ୍ରତିଶ୍ରୁତି କେହି ଦେଇ ପାରିଲେ ନାହିଁ ।

ସ୍ୱପ୍ନା ଦେବୀ ଶାନ୍ତିର ପ୍ରକୃତ ରୂପକୁ ଦେଖି ପାରିଲେ । ଆଉ ମଧ ବୁଝିଗଲେ—ପ୍ରାଚୁର୍ଯ୍ୟ କେବଳ ବିପର୍ଯ୍ୟସ୍ତ ହୁଏ ଏବଂ ଅହଂକାର କେବଳ ଧୂଳିସାତ୍ ହୁଏ । ତାଙ୍କର ହୃଦୟଟା ବଦଳି ଗଲା । ବାବୁଙ୍କ କରୁଣ ଅନୁରୋଧକୁ ରକ୍ଷା କରି ସୁଦୂର ପଲ୍ଲୀକୁ ଦୌଡ଼ିଲେ । ତାଙ୍କଠାରୁ ଔଦ୍ଧତ୍ୟତା, ଆଭିଜାତ୍ୟତା କେଉଁଆଡ଼େ ଉଭେଇ ଗଲା । ଆଜି ଉନ୍ମେଷିତ ହେଲା ପ୍ରକୃତ ନାରୀତ୍ୱ । ଠିକ୍ ସ୍ଥାନରେ ଯାଇ ପହଞ୍ଚିଲେ । କିନ୍ତୁ ସେ ଯାହାର ଅନୁସନ୍ଧାନରେ ସେଠାକୁ ଆସିଥିଲେ ସେ ସେଠି ନାହିଁ । ପରେ ପରେ ବହୁ ଅନୁ-ସନ୍ଧାନ ପରେ ଜାଣି ପାରିଲେ ଯେ ସେମାନେ ଆଜି ଭାଣ୍ଡର ଉକାଷ୍ଣ ।

ନିକଟବର୍ତ୍ତୀ ଗୋଟିଏ ସହରରୁ ଖବର ପାଇ ସ୍ୱପ୍ନା ଦେବୀ ଅନୁସନ୍ଧାନ ଚଳାଇଲେ । ରାସ୍ତା ଉପରେ ଠିଆ ହୋଇ ଏପଟ ସେପଟ ଅନୁମାନ କରୁଥାନ୍ତି । ତାଙ୍କଠାରୁ ଅଳ୍ପ ଦୂରରେ ମା'

କୋଳରେ ଆଠ ବର୍ଷର ଛୁଆଟି ବସି ସ୍ୱପ୍ନା ଦେବୀଙ୍କ ଆଡ଼କୁ ହାତ ଦେଖାଇ କହୁଛି—ମା' ସେହି ବାବୁକୁ ମୁଁ କଣ ମାଗିବ ।

ମା, ତାର ହାତକୁ ଟେକି ଦେଇ କହୁଛି—ନାହିଁରେ ବାବୁ, ସେମାନେ ପର ସାହେବାଣୀ । ତୋତେ ସେମାନେ କଣ କହି ଦେବେ ? ତୋତେ ଦେଖିଲେ ସେମାନେ ହସିବେ ପୁଣି ଘୃଣା କରିବେ । ଛୁଆଟି ମା'ର ପାଟିକୁ ଜାବୁଡ଼ି ଧରି କହିଲା—ମା' କଣ ଭାଇ ମୋର ଥିଲେ ତାହାକୁ କଣ ମାଗିଥାନ୍ତି ? ଭାଇ ମୋର କୁଆଡ଼େ ଯାଇଛି ? କେବେ ଫେରିବ ? ମା' ଭାରି ଶୋକ ହେଲାଣି, ମୁଁ ଯାଉଛି କଣ ମାଗିବ ?

ବୁଭୁକ୍ଷିତ ଲଙ୍ଗଳା ଛୁଆଟି ସ୍ୱପ୍ନା ଦେବୀଙ୍କ ଆଡ଼କୁ ଧାଇଁ ଆସିଲା । ପୂର୍ବରୁ ସ୍ୱପ୍ନା ଦେବୀ ସବୁ ଅନୁମାନ କରିଥିଲେ । ହଠାତ୍ ଛୁଆଟି କହିଲା—ଦିଦି ମୋତେ କଣ ଦିଅ, ଦୁଇ ଦିନ ହେଲା ଭୋକରେ ଛଟପଟ ହେଉଛି । ସ୍ୱପ୍ନା ଦେବୀ ଲକ୍ଷ କଲେ—ପାଞ୍ଚ ପଇସା ପାଇଁ କେତେ କାତର ! କେତେ ଆଶାରେ ଛୁଆଟି ତାଙ୍କ ଆଡ଼କୁ ହାତ ଲମ୍ବାଇ ଭିକ୍ଷା ପ୍ରାର୍ଥନା କରୁଛି ।

ସ୍ୱପ୍ନା ଦେବୀ ହଠାତ୍ ତାକୁ ଟେକି ନେଇ କାଖରେ ରଖିଲେ । ପିଲାଟି ମଳିଆ ହୋଇ ଯାଇଛି ବୋଲି ତାଙ୍କର ଘୃଣା ନଥିଲା ବରଂ ନାକରୁ ଶିଙ୍ଘାଣି ମେଞ୍ଚାଏ ପୋଛି ସଫା କରି ଦେଇଥିଲେ । ଛୁଆଟି ଯାହା ଖାଇବାକୁ ଖୋଜିଲା ସ୍ୱପ୍ନା ଦେବୀ ତା ପାଇଁ ଆଣାଇ ଦେଲେ । ଆନନ୍ଦରେ ଖାଉ ଖାଉ ଛୁଆଟି କହିଲା —ମୋର ରମା ଭାଇଟା ମୋତେ ଏମିତି ସବୁବେଳେ ଖାଇବାକୁ ଦେଉଥିଲା ।

କୁଆଡେ ଗୁଲି ଗଲା ଆମ୍ଭେମାନେ ମୋଟେ ଖାଇବାକୁ ପାଉନୁ । ପିଲାଟା ଉମାକାନ୍ତ ବୋଲି ଜାଣିପାରି ସ୍ୱପ୍ନା ଦେବୀଙ୍କର ଖୁବ୍ ଆନନ୍ଦ ଜାତ ହେଲା । ତାହା ସଙ୍ଗେ ସଙ୍ଗେ ସେମାନଙ୍କର ଅବସ୍ଥା ଦେଖି ଖୁବ୍ ଦୁଃଖିତ ହେଲେ ।

ସ୍ୱପ୍ନା ଦେବୀ ଛୁଆଟିକୁ ପ୍ରଶ୍ନ କଲେ—ଆଚ୍ଛା, ତୁମର ନାମ କଣ କହି ପାରିବ ?

—ଉମାକାନ୍ତ ।

ଠିକ୍ ଜବାବ ପାଇଲେ ସେ ।

ପିଲାଟିର ମା', ଏହି ଦୟାମୟୀ ନାରୀ ଛୁଆଟି ପ୍ରତି ଏତେ ଦୟା କରିବେ ବୋଲି ସ୍ୱପ୍ନରେ ବି ଭାବି ପାରି ନଥିଲେ । ହଠାତ୍ ସ୍ୱପ୍ନାଦେବୀ ଛୁଆଟିକୁ ଧରି ତାର ମା' ପାଖରେ ଉପସ୍ଥିତ ହେଲେ । ପୁଣି ତାର ମା'ଙ୍କୁ ପ୍ରଶ୍ନ କଲେ —ଆଚ୍ଛା, ଉମାକାନ୍ତର ପିତା କେଉଁଠାରେ ଅଛନ୍ତି କହି ପାରିବେ ? ମା' ତାର ଛଳ ଛଳ ନୟନରେ ଉତ୍ତର ଦେଲେ —ଦୁର୍ଭିକ୍ଷ ଦାଉରୁ ରକ୍ଷା ପାଇବା ପାଇଁ ବମ୍ବେ ସହରରେ କୌଣସି କାରଖାନାରେ ଚାକିରୀ କରିବା ପାଇଁ ଉମାକାନ୍ତକୁ ଆଜ ମୋତେ ଛାଡ଼ି ଯିବାର ଦୁଇ ମାସ ନ ପୁରୁଣୁ କୌଣସି ନାରୀର ଗାଡି ତଳେ ଚଲେ ପଡ଼ି ପ୍ରାଣ ହରାଇଛନ୍ତି ବୋଲି ଭିକାରୀ ଦଳ ଖବର ପଠାଇଛନ୍ତି । ତାଙ୍କ ବିଷୟରେ ସେମାନେ କେବଳ ଏତିକି ମାତ୍ର ଜାଣନ୍ତି ।

ସ୍ୱପ୍ନା ଦେବୀ ନିଜର ପାପ କର୍ମ କଥା ମନେ ପକାଇ ଖୁବ୍ ବ୍ୟାକୁଳ ହେବା ସଂଗେ ସଂଗେ ଲୋତକ ବର୍ଷଣ କଲେ । ଭଦ୍ର ମହିଳାଂକର ଆଖିରୁ ଲୁହ ଗଡ଼ିବାର ଦେଖି ଉମା କାଂତର ମା' ସହ୍ୟ କରି ପାରିଲେ ନାହିଁ । କିନ୍ତୁ ସହାନୁଭୂତି ପ୍ରଦର୍ଶନ କରିବା ପାଇଁ ତାଂକ ଶୁଖିଲା ଆଖିରେ ମଧ୍ୟ ଲୁହ ନଥିଲା । ସ୍ୱପ୍ନା ଦେବୀଙ୍କୁ ବହୁତ ଆଶ୍ୱାସନା ଦେଇ ଧୀର କରାଇଲେ ।

ପରେ ସ୍ୱପ୍ନା ଦେବୀ ପ୍ରଶ୍ନ କଲେ—ରମେଶ ବାବୁ ତୁମର ପୁଅ ନା ?

ପୁତ୍ରର ସକଳ କୁକର୍ମକୁ ଭୁଲି ଯାଇ ମାତା ବ୍ୟାକୁଳରେ ହଁ ଭରିଲେ ।

ସ୍ୱପ୍ନା ଦେବୀ ତାଙ୍କୁ ସଂକ୍ଷିପ୍ତ ପରିଚୟ ଦେଇ ରମେଶ ବାବୁଂକ ନିକଟକୁ ଯିବା ପାଇଁ ସକଳ ବନ୍ଦୋବସ୍ତ କରିଦେଲେ ।

ସ୍ୱପ୍ନା ଦେବୀ, 'ଉମାକାଂତ ଆଉ ତାର ମା' ବଙ୍ଗଳାରେ ପ୍ରବେଶ କରିବା ପରେ ରମେଶ ବାବୁଂକର ଜୀବନ୍ତ ମୂର୍ତ୍ତିକୁ ଆଉ ଦେଖି ପାରିଲେ ନାହିଁ । ଦେଖିଲେ କେବଳ ଏକ ଶବ ଶଯାଳୀ । ସେଇଠି ରମେଶବାବୁଙ୍କର ଯନ୍ତ୍ରଣା ପୂର୍ଣ୍ଣ ଜୀବନ ଅନ୍ତ ଶୋଚନୀୟ ଭାବେ ନିର୍ବାପିତ ହୋଇ ଥିଲା । ଆଉ କହି ଯାଇଥିଲେ—ସ୍ୱପ୍ନା ଧନେ ଉମା କାନ୍ତକୁ ମଣିଷ କରିବୁ ।

ପ୍ରାଚୁର୍ଯ୍ୟ ହଠାତ୍ ବହିଷ୍କାରିତ ହେଲ । ସେ ବହିଷ୍କାରଣରେ ଗାରିମା ହେଲ ଧୂଳିସାତ୍ । ଅହଂକାର, ଅର୍ଭିମାନର ସ୍ତୂପ ହେଲ ଚୂର୍ଣ୍ଣୀଭୂତ । ବହିଷ୍କାରଣ ସୃଷ୍ଟି କଲ ମାନବିକତା । ଧୌତ ହେଲା ନାରୀର କଳଙ୍କ । ଆବିର୍ଭାବ ହେଲ ନାଶ୍ବରତ୍ଵ । ଅଭିଶପ୍ତା ପଲଟିଲେ ସୁଭଦ୍ରା । ସେବା, ଦୟା, ଧର୍ମ ହେଲ ସୁଭଦ୍ରାଙ୍କର ମୂଳମନ୍ତ୍ର ।

ସ୍ୱପ୍ନା ଦେବୀଙ୍କର ହାତରୁ ଚୁଡ଼ି ଖସିଗଲା । ମଥାରୁ ସିନ୍ଦୂର ଟୋପା ଲିଭିଗଲା । ବମ୍ବେ ମେଡ଼ ନାଇଲନ୍ ଶାଢ଼ୀ ପରିବର୍ତ୍ତେ ପରିଧାନ କଲେ ଖଦଡ଼ ଖଦୀ । ମାତା ପୁତ୍ରର ବିୟୋଗରେ ଭାଙ୍ଗି ପଡ଼ିଲେ । ଅନାକ୍ରାନ୍ତ ଶରୀରରେ ପୁତ୍ରହରା ଜନନୀର ପ୍ରାଣରେ ସୃଷ୍ଟି ହେଲା ଦାରୁଣ ବେଦନା । ବେଦନା ଦଗ୍ଧୀଭୂତ ଜନନୀ ହେଲେ ମୂର୍ଚ୍ଛିତ । ଭୃମାକାନ୍ତ ବାଇର ଚିତା ଭସ୍ମ ବୋଳି ହେଲ । ତା' ପରେ......

× × × ×

———

## ଜୀବନ୍ତ ବିଗ୍ରହ ପୂଜା

ସେ କେଉଁ ଏକ ଅତୀତର କାହାଣୀ ।

ଅତୀତ ସମସ୍ତ ଗର୍ଭରେ ହୋଇଛି ଲୀନ । ବର୍ତ୍ତମାନର ହୋଇଛି ଆବିର୍ଭାବ । କିନ୍ତୁ ଅତୀତର ସେହି ଯୁଗାନ୍ତରର ଆଦର୍ଶରେ ପରିପୁଷ୍ଟ ହୋଇଛି ତାର ତନୁଶ୍ରୀ ।

ସାବିତ୍ରୀ ଥିଲେ ଅତୀତର ଜଣେ ନାରୀ, ସୁକୁମାରୀ, ରାଜକନ୍ୟା । ସମସ୍ତଙ୍କ ପରି ତାଙ୍କଠାରେ ଥିଲା ନାରୀତ୍ୱର ବିକାଶ । କିନ୍ତୁ ସେ ବିକାଶ ଥିଲା ସ୍ୱତନ୍ତ୍ର । ଏକ ପତି ପୂଜାରିଣୀ ସାବିତ୍ରୀଙ୍କର ସତୀତ୍ୱ ପହଞ୍ଚି ଥିଲା ଚରମ ସୀମାରେ ।

ସେ ଥିଲେ ମୃତ୍ୟୁଞ୍ଜୟୀ । ସତୀତ୍ୱ ଉପରେ ଗଭୀର ବିଶ୍ୱାସ ତାଙ୍କ ପାଇଁ ଆଣିଦେଲା ଏ ମହାର୍ଘ ।

ଦୁର୍ଜେୟ ଯମରାଜ ହେଲେ ପରାଜୟ । ସେ ହେଲେ ସୌଭାଗ୍ୟ ବିଜୟୀ । ବିଜୟର ଜୟ ଜୟ ଧ୍ୱନି ମଧ୍ୟରେ ମୃତ

ପତିଙ୍କର ପ୍ରାଣ ହେଲା ପ୍ରତିଷ୍ଠା । ଶତ ପୁତ୍ରର ହେଲେ ମାତା । ଫେରିପାଇଲେ ହୃତ ରାଜ୍ୟ । ଶ୍ୱଶୁର ଫେରିପାଇଲେ ଦିବ୍ୟ-ଲୋଚନ । ଚିର ସଂଗସ୍ଥ ହୋଇଲା ଦୂର । ସାବିତ୍ରୀ ହେଲେ ଜଗତର ଗାୟତ୍ରୀ ।

ଏ ସୁମହାନ ଆଦର୍ଶ ସଧବାର ସିନ୍ଦୂର ବିନ୍ଦୁରେ ପ୍ରତିଷ୍ଠା କଲା ପ୍ରାଣ । ସେ ହେବ ଚିର ସଧବା । ପାର୍ତ୍ତି ମୟ ହେବ ଲଲାଟ । ସତୀତ୍ୱ ହେବ ତା'ର ମନ୍ତ୍ର । ସେ ହେବ ଜିତେନ୍ଦ୍ରିୟ । ଇନ୍ଦ୍ରିୟ ଇଛାକୁ କରିବ ପ୍ରତ୍ୟାଖ୍ୟାନ । ବିଶୁଦ୍ଧ ହେବ ତାର ହୃଦୟ । ପତି ପ୍ରାଣରେ ଭରିଦେବ ଦିବ୍ୟ ପ୍ରେମ । ସୃଷ୍ଟି କର୍ତ୍ତାଙ୍କ ନିକଟରେ ଅଳ କରିବ — ଏ ପ୍ରେମ ହେବ ଚିର ସ୍ଥାୟୀ । ସ୍ୱାମୀ ତାର ହୁଅନ୍ତୁ କାଳ ଜୟୀ । ଲଲାଟର ସିନ୍ଦୂର ବିନ୍ଦୁ ହେଉ ଚିର ପୁଲ-କିତ । ଚିର ସୌରଭିତ ହେଉ ଗଭୀରେ ସ୍ମୃତି ମଲ୍ଲିକା ।

ସେଇଠୁ ଚାଳିତ ହେଲା ବିଷ୍ଣୁ ପୂଜା । ବିଷ୍ଣୁ ହେଲେ ସନ୍ତୁଷ୍ଟ । ଉଷା ହେଲା ସଧବାର ସିନ୍ଦୂର ବିନ୍ଦୁ । ମହକି ଉଠିଲା ପୂଜା ପୀଠ । ଅର୍ଚ୍ଚନା ସାମଗ୍ରୀରେ ପୂଜା ପୀଠ ହେଲା ଭରପୂର । ପୂଜାଂଶ ଆରମ୍ଭ କଲେ ପ୍ରଣବଧ୍ୱନି । ସଧବାର ବିସ୍ମୃତି ହେଲା ପୁନରୁଜ୍ଜୀବିତ ।

ଏ ମହାନ ପରମ୍ପରା ଲାଗି ରହିଲା ସେହି ଅଶ୍ୱପତିରୁ । ପ୍ରୀତ ହେଲେ ପିତା ମାତା । ସଧବା କନ୍ୟାଙ୍କର ଅର୍ଚ୍ଚନାରେ ହେଲେ ତୃପ୍ତ । ବର୍ଦ୍ଧିତ ହେଲା ପୂଜାଞ୍ଜଳି । ହେଉ ଜୟୀ କନ୍ୟା ତାଙ୍କର ହେଉ ଚିରାୟୁ ମନତାର । ଧର୍ମ ପ୍ରଚଳନ କଲା ଆଇନ । କନ୍ୟା

ଭ୍ରାତା ହେଲେ ବସ୍ତୁ ପୂଜା ସାମଗ୍ରୀର ପ୍ରୈତିବାଦତା । ସମସ୍ତ ସ୍ରୋତରେ ଏ ଆଇନ ହେଲା କଠୋର ।

କଠୋର ଆଇନ ମଧ୍ୟେ ଜନ୍ମ ଯେଉଁ ପିତା, ମାତା, ଭ୍ରାତା ଏ ସାମଗ୍ରୀ ସେପିଠରେ ହେବ ଅସମର୍ଥ...... ।

× × × ×

ଆସନ୍ତା କାଲି ସାବିତ୍ରୀ ଅମାବାସ୍ୟା । ଶତ ଶତ ସଧବାର ଆରାଧନାରେ ବସ୍ତୁ ହେବେ ତୃପ୍ତ ।

ରମାଦେବୀ ହେଲେଣି ଅନେକ ସମାଲୋଚନାର ଶରବ୍ୟ । ତଥାପି ପିତାଳୟରୁ ସ୍ୱଜନଙ୍କୁ ଗୃହିଁ ବସିଥିଲେ । ସେ ସମାଲୋଚିତ ହେବାକୁ ଗ୍ରହ୍ନି କରିଥିଲେ । ଏ ଉପରେ ତାଙ୍କର ଆଖି ଜକେଇ ଆସୁଥିଲା । ସମସ୍ତ ତଳିଲେ ଜନନୀ ଆଖିର ଲୋତକ ସ୍ଫୀତ ହୋଇ ଉଠୁଥିଲା ।

ହଠାତ ଦରଜାରେ ଉପସ୍ଥିତ ବନ୍ଧୁଜନ ରମାଙ୍କ ପ୍ରାଣରେ ଆଣି ଦେଲା ସାନ୍ତ୍ୱନା । ଅଭୁକ୍ତ ପୂର୍ବ ପୂଜା ସାମଗ୍ରୀ ସ୍କନ୍ଧରୁ ଓହ୍ଲାଇ ଜନକ ଦେଶଙ୍କୁ ତାର ପ୍ରଣାମ କଲା । ଆଉ ଜଣାଇ ଦେଲା ତାଙ୍କର ପିତାଙ୍କର ଆଗମନର ସୁ-ସମ୍ବାଦ ।

ଆନନ୍ଦର ହିଲ୍ଲୋଳରେ କୋଠରୀ ଗର୍ଭ ହେଲା କୋଳାହଳମୟ । ପିତାଙ୍କୁ ସମ୍ମାନ ପୂର୍ବକ ଅଭ୍ୟର୍ଥନା ପରେ କୁଳବଧୂ ପାଇଲେ ଆଶ୍ୱସ୍ତି । ଶୀତଳତାର ହେଲା ଅବସାନ । ଉଷ୍ମତାର ହେଲା ବିକାଶ ।

ବସ୍ତ୍ର ପୂଜାପୀଠ ହେଲା ନିର୍ମାଣ । ବହୁ ରଙ୍ଗରେ ରଞ୍ଜିତ ହେଲା ପୀଠର ବପୁ । ଗୌରବିତ ହେଲା ସେ ପବିତ୍ର ସ୍ଥଳୀ । ସ୍ଥାପିତ ହେଲେ ପାଷାଣ ପ୍ରତିମା । ବେଦର ଆଦ୍ୟ ପାଳ ଧ୍ୱନିରେ ପୂଜାଶ୍ରୀ ପାଷାଣ ପ୍ରତିମାରେ ପ୍ରତିଷ୍ଠା କରିବେ ପ୍ରାଣ । ପ୍ରଫୁଲ୍ଲ ପୂଜା ସାମଗ୍ରୀରେ ପୀଠ ହେବ ଭରପୂର । ପୁରାଣ ପାଠ କରିବେ ନୈଷ୍ଠିକ ବ୍ରାହ୍ମଣ । ସଧବାଙ୍କ କର୍ଣ୍ଣରେ ପଶିତ ହେବ ସତ୍ୟବାନ ଓ ସାବିତ୍ରୀଙ୍କର ଅନାବିଳ ପ୍ରେମର ଅଲୌକିକ କଥା । ହସ୍ତ ହଲାଇ ବ୍ରାହ୍ମଣ ବୁଝାଇବେ ସାବିତ୍ରୀଙ୍କର ନାଟକୀୟ ବିଜୟ ଓ ଯମରାଜାଙ୍କର ପରାଜୟ । ପୁରାଣରୁ ଆଦର୍ଶ ବିତରଣ କରି, ବ୍ରାହ୍ମଣ ପାଇବେ ମୋଟା ଦକ୍ଷିଣା ।

ଏ ପୂଜା ପୀଠର ବ୍ରାହ୍ମଣ ଖୁବ୍ ଆଶାପ୍ରୀ– ସନ୍ତୋଷ ଦକ୍ଷିଣା ସେ ଆଦାୟ କରିବେ ପ୍ରଦ୍ୱରାଜଙ୍କ ବୋହୂଠାରୁ । ସଭିଙ୍କର ଭକ୍ତ ସେଇଠି ତାଙ୍କର ଅର୍ଚ୍ଚନା ସାମଗ୍ରୀ ଦର୍ଶନ ପାଇଁ ।

ଆଜି ଅମାବାସ୍ୟାର ସକାଳ । ନୀଳ ଆକାଶ ହେବ ଚନ୍ଦ୍ର ଶୂନ୍ୟ । ଧରଣୀ ହେବ ତମସାଚ୍ଛନ୍ନ ।

କିନ୍ତୁ ହଳଦୀ ପ୍ରଲେପନ, କେଶ ପ୍ରକ୍ଷାଳନ ପର୍ବ ସମାପ୍ତି ହୋଇଛି । ବର୍ତ୍ତମାନ ସବୁଠାରେ ଚାଲିଛି କେଶ ବିନ୍ୟାସ ।

ଅଳଙ୍କାର ବିଭୂଷଣ, ଉତ୍ତମ ବସ୍ତ୍ର ପରିଧାନ । ଆଉ ଆମୋଦିତ ତୈଳ ମର୍ଦ୍ଦନ । ପାଦରେ ସମସ୍ତେ ଫୁଟାଇ ଛନ୍ତି ଅଳତାର ରଙ୍ଗ ।

ରମାଦେବୀ ତମ୍ବୁଳତାରେ ଫୁଟାଇଛନ୍ତି ଅପୂର୍ବ ତେଜ ।

ମୁଖ ମଣ୍ଡଳରେ ଜାଙ୍କର ଜ୍ୟୋତି । ଚକ୍ଷୁରେ କଜ୍ଜଳର କରମ ଦୀପ୍ତି । ଓଷ୍ଠରେ ହାସ୍ୟର ଏକ ସରଳରେଖା । ଘନକୁନ୍ତଳ ତାଙ୍କର ସୁରଭିତ ଓ ସୁ-ତରଙ୍ଗାୟିତ । ଆପାଦ ମସ୍ତକ ଆବୃତ୍ତ ବହୁମୂଲ୍ୟର ବସ୍ତ୍ର । ଆବକ୍ଷ ଆଚ୍ଛାଦିତ ସ୍ୱର୍ଣ୍ଣଭୂଷଣ । ପଦ୍ମତଳା ପାଦରେ ନୂପୁରର କ୍ଷୀଣ ଧ୍ୱନି । ଚଳ ଚଞ୍ଚଳ ହସ୍ତରେ ସଧବାର କଙ୍କଣର ଶବ୍ଦ ।

ସୁଦୀର୍ଘ ଅବଗୁଣ୍ଠନ ଭିତରେ ଏକ ସଞ୍ଚର ପ୍ରାଣ । ସୀମାନ୍ତ ସିନ୍ଦୂର ହେଉଛି ଦୀପ୍ତିମାନ । ତାଙ୍କର ଆରାଧନାରେ ଇଷ୍ଟ ହୁଅନ୍ତୁ ପ୍ରସନ୍ନ । ଅର୍ଚ୍ଚନା ସାମଗ୍ରୀ ସହିତ ଅଗ୍ରସର ହେଲେ ପୂଜାପୀଠ ଆଡ଼କୁ ।

ସ୍ୱାମୀଙ୍କ ଠାରୁ ଅନୁମତି ଭିକ୍ଷାପାଇଁ ରମା ଉପସ୍ଥିତ ହେଲେ ସମୀପବର୍ତ୍ତୀ କୋଠରୀରେ ।

ରମାଦେବୀ ନିଜକୁ ସୁଗୃହିଣୀ ରୂପେ ସଜାଇ ଥିବାରୁ ଓ ରୂପ ପରିପାଟୀ ଅସାଧାରଣ ଭାବରେ ବଢ଼ାଇ ଦେଇ ଥିବାରୁ ସ୍ୱାମୀଙ୍କ ସମ୍ମୁଖସ୍ଥ ହେବାକୁ ସଙ୍କୋଚ ବୋଧ କରୁଥିଲେ ମଧ୍ୟ ଅନୁମତି ପାଇଁ ସ୍ୱାମୀ ସମୀପରେ ଉପସ୍ଥିତ ହେଲେ ।

ସ୍ୱାମୀ କୋମଳାଙ୍ଗୀ ରମାଙ୍କର ଅଙ୍ଗ ବଲ୍ଲରୀର ରୂପ ବିନ୍ୟାସରେ ସଚେତନ ଥିଲେ ମଧ୍ୟ—ଆଜିର ଅନ୍ତରଙ୍ଗ ସୌନ୍ଦର୍ଯ୍ୟକୁ ଆପାଦ ମସ୍ତକ ଅବଲୋକନ କରି ନିରୁତ୍ତର ହୋଇ ରହିଲେ । ତାଙ୍କର ଏହି ଅସମ୍ଭବ ରୂପ ବିନ୍ୟାସର ଜ୍ୟୋତିର୍ମୟ ଲଲାଟ ମଧ୍ୟ ଭାଗରେ ଦପ୍ ଦପ୍ ହୋଇ ପ୍ରଜ୍ୱଳିତ ହେଉଥିଲା ଏକ ସୁଦୀର୍ଘ ସିନ୍ଦୂର ଗାର । ଏହା ଥିଲା ତାଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ।

ଅନୁମତି ଓ ଆଶୀର୍ବାଦାକାଂକ୍ଷୀ ରମା ଦେବୀ ଏ ଭଳି ଏକ ପୂଜା ଦିବସରେ ସ୍ୱାମୀଙ୍କୁ ନିରୁତ୍ତର ଦେଖି ବିଶେଷ ଭାବରେ ବିଚଳିତ ହେଲେ । ସ୍ୱତଃ ମନରେ କେତେକ ଆଶଙ୍କାର ଶିକାର ହେଲେ । ଧୀରେ ଧୀରେ ନିରୁତ୍ତର ସ୍ୱାମୀଙ୍କର ଚକ୍ଷୁ କୋଠରୁ ତରଳ ଅଶ୍ରୁ ଅପସାରିତ ହେବାକୁ ଲାଗିଲା । ରମାଦେବୀ ଆହୁରି ଆତଙ୍କିତ ହେବାକୁ ଲାଗିଲେ ।

କିନ୍ତୁ ହଠାତ୍ ସ୍ୱାମୀ ତାଙ୍କର ବେଦନା ଯୁକ୍ତ କଣ୍ଠରେ ପ୍ରକାଶ କଲେ—ରମାଦେବୀ, ଆଜି ତୁମେ ସକଳ ସୌନ୍ଦର୍ଯ୍ୟର ରାଣୀ । କେଉଁ ଏକ ଦକ୍ଷ ଶିଳ୍ପୀ ତା'ର ତୁଳୀରେ ଫୁଟାଇଛି ସକଳ ସୌନ୍ଦର୍ଯ୍ୟ ତୁମ ଶରୀରରେ । କି.....ନ୍ତୁ......ଆଜି ଏ ବସ୍ତୁ ପୂଜା କାହାପାଇଁ ?

ରମା ଦେବୀଙ୍କର ସୁ-ବିନ୍ୟସ୍ତ କଜ୍ଜଳ ଧାର ପ୍ରାନ୍ତରୁ ଝରିଲା ଅଶ୍ରୁ । ମନେ ମନେ ଶଙ୍କିତ ହେଲେ—ଅସତୀ ବୋଲି ସ୍ୱାମୀ ତାଙ୍କୁ ସନ୍ଦେହ କରନ୍ତି କି ?

ସମ୍ମୁଖରେ ଦୀର୍ଘାୟୁ ପର୍ଯ୍ୟାୟରେ ଆରମ୍ଭ କଲେ ସତୀ, ସଧବା ସ୍ତ୍ରୀ ମାନଙ୍କର ଏ ପୂଜା ହେଉଛି କାମ୍ୟ । କିନ୍ତୁ କି...ନ୍ତୁ.... ।

ରମାଦେବୀ ଆହୁରି ଶଙ୍କିତ ହେଲେ । ଲୋକଙ୍କ ନୀରବ ପ୍ରତିବାଦ କଲା ତାହା ନୁହେଁ, ଅମ୍ଳାନ ବଦନ ମଳିନ ହୋଇ ପ୍ରତିବାଦ କରିବାକୁ ଲାଗିଲା—ମୋ ଠାରେ ଏ ସନ୍ଦେହ କାହିଁକି ? ଆପଣ ମୋର ସ୍ୱାମୀ । ମୋର ଦୀର୍ଘାୟୁ ଲାଳସା ନାହିଁ ।

ସ୍ୱୀକାର କରୁଛି ରମାଦେବୀ, ତୁମ ସଙ୍ଗୀତରେ ମୁଁ ଖୁବ ଖୁସି । କିନ୍ତୁ ତୁମର ସ୍ୱାମୀ ଯେ ମୃତ ଏ କଥା ତୁମେ ଜାଣ କି ?

ବୋଧ ହେଲା ଅକସ୍ମାତ ଆକାଶରୁ ବଜ୍ର ହେଲେ ନିପାତିତ । ଉଜ୍ଜ୍ୱଳ ମଧ୍ୟାହ୍ନ ହେଲା ତମସାଚ୍ଛନ୍ନ । ନୀଳ ଆକାଶ ହେଲା ଜ୍ୟୋତିହୀନ । ରକ୍ତ ମାଂସର ଶରୀର ବେଦନାରେ ହେଲା କମ୍ପମାନ । ସୁ-ସଜିତ ପୂଜା ସାମଗ୍ରୀ ହେଲା ହସ୍ତଚ୍ୟୁତ । ଭୂଇଁରେ ପଡ଼ି ରହିଲା ଅନ୍ତରର ଲୋଡ଼ିଲା ପଦାର୍ଥ । ଅନ୍ତର ଆତ୍ମାରେ ସୃଷ୍ଟି ହେଲା ଏକ ଆବେଗ ଭରା କ୍ରନ୍ଦନ ।

ଜଣେ ପୁରୁଷ ଆଉ ଜଣେ ନାରୀ । ପରସ୍ପର କଲେ ଉଷ୍ଣ ଅଶ୍ରୁ ବର୍ଷଣ । ପରସ୍ପରକୁ କଲେ ଅବଲୋକନ । ଦୀର୍ଘ ଏକ ବର୍ଷ ଧରି ଯେଉଁମାନେ ସ୍ୱାମୀ ସ୍ତ୍ରୀ ବୋଲି ପରିଚିତ ଆଜି ସେମାନେ ଦୁଇଟି ଭିନ୍ନ ନାରୀ ଓ ପୁରୁଷ । କେହି କାହାର ସମ୍ମୁଖସ୍ଥ ହେବାର ଅଧିକାର ନାହିଁ । ପୁଣି ରମାଦେବୀ ଯାହାକୁ ସ୍ୱାମୀ ବୋଲି ଜାଣନ୍ତି ଓ ଯାହା ସହିତ ଏକ ବର୍ଷ ଏକ ନିବାସ ସ୍ଥଳୀରେ କେତେ ରଙ୍ଗମଞ୍ଚସ୍ଥ ହୋଇଛନ୍ତି, ସେ ପୁଣି ଭାଷଣ ଦେଉଛନ୍ତି—ରମାଦେବୀ ! ତୁମର ସ୍ୱାମୀ ମୃତ । ଏହି ଆଡ଼ମ୍ବର କାହା ପାଇଁ ? ତଡ଼ିତ୍ ପ୍ରବାହର ଝିମି ଝିମି ଖେଳିଗଲା ରମାଦେବୀଙ୍କ ଶରୀରରେ । ମନେ ପଡ଼ିଗଲା ତୁଳସୀ ନିକଟରେ ଜଳନ୍ଧର ପୌରାଣିକ ଛଦ୍ମବେଶ । ସତ କଣ ସ୍ୱାମୀ ତାଙ୍କର ଛଦ୍ମବେଶୀ ! ବିଚଳିତ ହେଲେ ସେ । ଆଜି ହେଲେ ଭୂ-ପତିତା । ସ୍ୱାମୀ ତାଙ୍କର ଅଶ୍ରୁ ଅପସାରଣ କରିବା ପାଇଁ ଆଗେଇ ଗଲେ । କିନ୍ତୁ ସତୀ ସାଧ୍ୱୀ ରମା ତାଙ୍କୁ ପର ପୁରୁଷ ମନେକରି ସ୍ପର୍ଶ ନ କରିବାକୁ ଇଙ୍ଗିତ ଦେଲେ । ଆଜି ହେଲେ ସଙ୍କୋଚ୍ୟୁତ ।

ପୁରୁଷ ଜଣକ ହେଲେ ଧୈର୍ଯ୍ୟଚ୍ୟୁତ । ଚେତନା ଫେରାଇ ଆଣିବାକୁ କଲେ ଅନେକ ଉଦ୍ୟମ । ମୁଖ ମଣ୍ଡଳରେ ଛିଞ୍ଚିଲେ ସ୍ୱଚ୍ଛଜଳ । ସ୍ୱହସ୍ତରେ ପାନ କରାଇଲେ ଶୀତଳ ନୀର । କିଛିକ୍ଷଣ ପୂର୍ବେ ଯେଉଁ ମୁଖମଣ୍ଡଳ ଘର୍ମାକ୍ତ ହୋଇ ଉଠୁଥିଲା, ଅବଳମ୍ବସ୍ତ ହୋଇ ଉଠିଲା ଅହେତୁକ ଜଳ ସ୍ପର୍ଶରେ । ଚିତ୍କାର କରି ଉଠିଲେ ରମା—ସେ ପର ପୁରୁଷର ସ୍ପର୍ଶ ସହେନା ।

ସେତେବେଳେ ଶୁଣାଗଲା—ମୁଁ ଛଦ୍ମବେଶୀ ନୁହେଁ ରମା ଦେବୀ ! ଏହା ଏକ ନିୟତିର ବିଚିତ୍ର ଘଟଣା ମାତ୍ର । ଉତ୍କଣ୍ଠିତ ଚିତ୍ତରେ ରମାଦେବୀ ଅବଲୋକନ କଲେ ସେହି ପର ପୁରୁଷକୁ । ଲୋକଟି ଛଦ୍ମବେଶୀ ନୁହେଁ ଅଥଚ ମୃତ । ତେବେ କଣ ଅନିଷ୍ଟ-କାରୀ ପ୍ରେତାତ୍ମା ?

ନା ରମାଦେବୀ, ଆମ୍ଭେରେ ଭୟ ସଞ୍ଚାର କରନାହିଁ । ମୁଁ ପ୍ରେତ ମଧ୍ୟ ନୁହେଁ । ତେବେ ତେ...ବେ... —ଶୁଣ ରମା, ସେହି ନିୟତିର ବେଦନା ଦାୟକ ଘଟଣା ।

ଆଜି ତୁମେ ବିପୁଳ ଐଶ୍ୱର୍ଯ୍ୟର ଅଧିକାରିଣୀ । ତେଣୁ ତୁମର ଅଭିଳଷିତ ଆଡ଼ମ୍ବରରେ କେହି ବାଧା ଦେଇ ନ ପାରନ୍ତି । ତେଣୁ ନିଜ ସ୍ୱାମୀର ଦୀର୍ଘ ଜୀବନ କାମନା ପାଇଁ ତୁମେ ଶତ ଚେଷ୍ଟିତ ଓ ଓ ଧର୍ମପ୍ରାଣ । କିନ୍ତୁ, କି...ନ୍ତୁ...ଏମିତି ଏକ ଦିନରେ ମୋର ମୃତ୍ୟୁ ଘଟିଛି । ରମାଦେବୀ, ସେତେବେଳେ ମୁଁ ଏହି ବିପୁଳ ବିଭବର ଅଧିକାରୀ ହୋଇ ପାରିନଥିଲି । ଶିକ୍ଷାଗତ ଯୋଗ୍ୟତା ଥିଲେ ମଧ୍ୟ ମୋଠାରେ ଶ୍ରୀନଥିଲା । ମୋତେ ସେତେବେଳେ ଅର୍ଥ ନୈତିକ ସଙ୍କଟ ଭୋଗ କରିବାକୁ ପଡ଼ୁଥିଲା ।

ଆଜିପରି ସେ ଦିନ ମଧ୍ୟ ଏକ ଅମାବାସ୍ୟା ଉପସ୍ଥିତ ହୋଇ ଥିଲା । ମୋର ଏକମାତ୍ର ଭଗିନୀ ମଧ୍ୟ ଏହି ଅମାବାସ୍ୟା ପାଳନ କରିବା ପାଇଁ ବ୍ୟସ୍ତ ଥିଲା । ଆଜି ତୁମେ ଯେଉଁ ଲକ୍ଷରେ ପୂଜା ସାମଗ୍ରୀର ଆୟୋଜନ କରିଥିଲ; ସେହିଦିନ ମଧ୍ୟ ସେ ସେହି ଲକ୍ଷରେ ଆୟୋଜନ କରିଥିଲା । କିନ୍ତୁ ଏହି ଆୟୋଜନର ନିୟମ ଅନୁଯାୟୀ ଆବଶ୍ୟକ ପୂଜା ସାମଗ୍ରୀ ପିତ୍ରାଳୟରୁ ସେ ସବୁ ପ୍ରେରିତ ହେବାର ଥିଲା । କିନ୍ତୁ ମୁଁ ପାରିଲିନି । ମାତ୍ର ଟଙ୍କା ପ୍ରେରଣ କରି ପାରିଲି ନାହିଁ । ଘରେ ସେ ଦିନ ସମସ୍ତେ ଉପବାସରେ ଥିଲେ । ବିକ୍ରିକ ହେବାଭଳି ମୋ ପାଖରେ କୌଣସି ବସ୍ତୁ ନଥିଲା । ତେଣୁ ମୁଁ ମରିବ ଭାବି ଯାଇଥିଲି । କିଛିଦିନ ପରେ ଖବର ପାଇଲି ଯେ ମୋର ଭଗିନୀର ସ୍ୱଜନମାନେ ମୋର ମୃତ୍ୟୁ ଘଟିଛି ବୋଲି ଧରିନେଲେ ଓ ପ୍ରଚାର ମଧ୍ୟ ଆରମ୍ଭ କରି ଦେଲେ । ସେହି ଗ୍ରାମବାସୀମାନେ ମଧ୍ୟ ଏହାକୁ ସ୍ୱୀକାର କରିଗଲେ । ତେଣୁ ମୁଁ ବହୁଲୋକ ସ୍ୱୀକୃତ ମୃତମାନବ; ନୁହେଁ ?

ଏଇ କେଇ ପଦ ରମାଦେବୀଙ୍କ ପାଇଁ ଆଣିଦେଲା ଶୀତଳତା । ସ୍ପନ୍ଦନ ହେଲା ସ୍ୱାଭାବିକ । ବିଷଣ୍ଣା ହେଲେ ପ୍ରସନ୍ନା । ଇତିହାସର ଇତିକଥା ତାଙ୍କୁ ହେଲାନାହିଁ ଅବୋଧ । ଭାବନାର ଗମ୍ଭୀରତାକୁ ମନେ ମନେ କଲେ ପ୍ରଶଂସା ।

କିନ୍ତୁ ତୁମର ଏ ଆଡ଼ମ୍ବର ମୋତେ ସେଇ ଅତୀତକୁ ଟାଣିନିଏ ରମା । ମନେପଡ଼େ ସେଦିନର ଏଇ ପୁରୁଷ ଚକ୍ଷୁ ଅର୍ଥହୀନା ହେତୁ ଥିଲା ଟଳମଳ । ଏ ସଂସାର ହେଉଥିଲା ବ୍ୟଥିତ । ମୁଁ ଥିଲି ଅତିଥି ଶୂନ୍ୟ । ମୋ ଜୀବନ ଥିଲା ନିଡ଼ାମ୍ବର । ଉପାଧି ହାସଲ କଲେ ମଧ୍ୟ ମୋ ପାଦରେ ନଥିଲା ପାଦୁକା । ମୁଁ ଥିଲି ସମସ୍ତଙ୍କ ଆଗରେ ଏକ ଭିନ୍ନ ମାନବ । ଅର୍ଥ ମୋତେ କାଙ୍ଗାଳ କରି ଦେଇଥିଲା ।

ଆଜି ସମାଧି ପ୍ରତିଷ୍ଠା କରି ଦେଇଥିଲି ମୋର ମୃତ୍ୟୁ ପାଇଁ । ଅଳ୍ପକେ ବଞ୍ଚିଗଲି । ଜୀବନଟା କୌଣସିମତେ ରକ୍ଷା ପାଇଗଲା ସେଇ ଦାରୁଣ କଷାଘାତରୁ ।

ମୋର ଗବେଷଣା ଆଜି ମତେ ସମାଜରେ କରିଛି ପ୍ରତିଷ୍ଠା । ମାତ୍ର ସ୍ୱଳ୍ପ ଦିନ ଭିତରେ ଉପାର୍ଜନ କଲି ପ୍ରଚୁର ଅର୍ଥ । ଫୁଟାଇଲି ସମସ୍ତଙ୍କ ମନରେ ଅର୍ଥର ହସ । ଜୁଟିଗଲେ ବନ୍ଧୁଗଣ । ଆସିଲା ନିମନ୍ତ୍ରଣର ଲହଡ଼ି । ସବୁଠି ଉପସ୍ଥିତ ହେଲି । ସବୁଠି ପାଇଲି ସମ୍ବର୍ଦ୍ଧନା । ଏ ଶବ୍ଦଟା ବଦଳି ଗଲା । ବର୍ତ୍ତମାନ ମୁଁ ଏ ମୂଲକର ସାହେବ । ମୋ ପାଖରେ ଅମାପ ଧନ ଅଛି । ରଜା ମହାରଜାଙ୍କୁ ମଧ୍ୟ କରଗତ କରିପାରିଛି । ରଜାଙ୍କର ଦେବାନ୍ ହେବାର ଯୋଗ୍ୟତା ହାସଲ କରିଛି । କିନ୍ତୁ ଏକ ଅନ୍ଧାରି ଅମାବାସ୍ୟାରେ ମୋର ମୃତ୍ୟୁ ଘଟିଛି, ନୁହେଁ ?

ରମାଦେବୀ ସ୍ୱାମୀଙ୍କର ବ୍ୟଥିତ ଅନ୍ତରର କରୁଣ ଚିତ୍ରକୁ ହୃଦୟଙ୍ଗମ କଲେ । ସେ ଯେପରି ମୃତ୍ୟୁ ଶବ୍ଦକୁ ବାରମ୍ବାର ଉଚ୍ଚାରଣ ନ କରନ୍ତି ସେଥିପ୍ରତି ସତର୍କତା ପୂର୍ବକ ସ୍ୱାମୀଙ୍କର ମୁଖମଣ୍ଡଳକୁ ନିଜ କୋମଳ ହସ୍ତରେ ଚାପି ରଖିଲେ ।

ନିଜର ମୁଖମଣ୍ଡଳ ଉପରୁ ରମାଙ୍କର ହସ୍ତକୁ ଅପସାରଣ କରି ସ୍ୱାମୀ ତାଙ୍କୁ ଯେଉଁ ନୟନରେ ଅବଲୋକନ କରିଥିଲେ— ସେଥିରେ ଭରି ହୋଇଥିଲା ଆବେଗମୟ ପ୍ରୀତିର ଉଲ୍ଲସିତ ସଙ୍କେତ । ନିଜ ସ୍ୱାମୀଙ୍କ ହସ୍ତରେ ନିଜ ହସ୍ତ ଦେଖି, ରମା ଦେବୀଙ୍କର ମାନସ ପଟରେ ଝଲସି ଉଠିଲା ବିବାହ ବେଦୀର ହସ୍ତ ବନ୍ଧନ । ଏହି ହସ୍ତ ସହିତ ହସ୍ତ ମିଶାଇବା ପାଇଁ କେତେ ପ୍ରତିଦ୍ୱନ୍ଦିତା ! କିନ୍ତୁ ପ୍ରତିଦ୍ୱନ୍ଦ୍ୱିତାରେ ଲଢ଼ୁଥିବା ପ୍ରାର୍ଥୀମାନେ

ହେଲେ ପରିଜିତ । ପ୍ରତିଦ୍ୱନ୍ଦ୍ୱିତାରେ ପ୍ରାର୍ଥୀ ନ ହୋଇ ରମାଦେବୀ ହେଲେ ମନୋନୀତ । ଅର୍ଥର ପ୍ରାଚୁର୍ଯ୍ୟ, ବଂଶର ଗାରିମା ତାଙ୍କର ସ୍ୱାମୀଙ୍କୁ ପ୍ରଲୁବ୍ଧ କରିପାରିଲା ନାହିଁ । ଯତ୍ନରେ ବର୍ଦ୍ଧିତ ଉପବନର କୁସୁମ ଅପେକ୍ଷା ଅରଣ୍ୟର ଗୁରୁ ମଲ୍ଲୀକାକୁ ସେ କଲେ ପସନ୍ଦ । ସୁଖୀ ହେଲେ ରମା । ଆଜି ପରିବାରର ସମସ୍ତଙ୍କୁ ସୁଖୀ କରିବା ପାଇଁ ପାଳନ କଲେ ବହୁ ପର୍ବ ପର୍ବାଣୀ, ଓଷା ଓ ବ୍ରତ ।

ଅତୀତ ଓ ବର୍ତ୍ତମାନକୁ ଓଜନ କରୁ କରୁ ରମାଙ୍କର ଆନତ ବଦନକୁ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ସ୍ୱାମୀ ପ୍ରଶ୍ନ କଲେ—ଆମର ପଡ଼ିଶାରେ ଯେଉଁ ଶିକ୍ଷୟିତ୍ରୀ ଅଛନ୍ତି ସେତ କାହିଁ ଏ ବ୍ରତ ପାଳନ କରନ୍ତି ନାହିଁ ? ମଥାରେ ସିନ୍ଦୁର କିମ୍ବା କୁଙ୍କୁମର ରେଖା ଟାଣନ୍ତି ନାହିଁ । ଆଜି ତୁମେ ଦୀର୍ଘ ରେଖା ଟାଣି...... ।

ତାହା ଉପରେ ମନ୍ତବ୍ୟ ମୁଁ ଦେଇ ନପାରେ । ଆପଣଙ୍କର ପ୍ରଶ୍ନର ଉତ୍ତର ମୁଁ ମଧ୍ୟ ଦେଇ ପାରିବି ନାହିଁ । ମୋ ଦ୍ୱାରା ଯାହା ହୋଇ ପାରିବ ମୁଁ କରି ଚାଲିବି ।

ସ୍ୱାମୀଙ୍କର ହସ୍ତରୁ ନିଜ ହସ୍ତକୁ ମୁକ୍ତକରି ରମାଦେବୀ ନିଜକୁ ସଜାଡ଼ିବାକୁ ଆରମ୍ଭ କଲେ ।

× × × ×

ସମସ୍ତ ସଧବା ପୂଜାପୀଠରେ ଉପସ୍ଥିତ ହେଲେ । କିନ୍ତୁ ଉପସ୍ଥିତ ହେଲେ ନାହିଁ ପ୍ରଧାନଙ୍କର କୁଳବଧୂ ରମା । ସମସ୍ତେ ହେଲେ ଆଚମ୍ବିତ । ଅର୍ଚ୍ଚନାରେ ହେଲା ବିଳମ୍ବିତ । ପୂଜାରୀ ଅପେକ୍ଷା କଲେ । ସକଳ ସଧବା ଅପେକ୍ଷା କଲେ । ସକଳ ପ୍ରସ୍ତୁତି

ସତ୍ତ୍ୱେ ଅନୁପସ୍ଥିତ ସ୍ୱର୍ଣ୍ଣ ଜନ୍ମ ଆଶଙ୍କା । ବ୍ରାହ୍ମଣେ ହେଲେ ବ୍ୟସ୍ତ । ସଧବା ହେଲେ ତ୍ରସ୍ତ ।

ସମ୍ବାଦ ପ୍ରେରଣ ହେଲା—ଅର୍ଚ୍ଚନା କାର୍ଯ୍ୟରେ ବିଳମ୍ବ ହେଉଛି ଆଗମନ ପାଇଁ ତତ୍ପର ହୁଅ । ସାମ୍ବାଦିକ ଗଣ ସମ୍ବାଦ ପରିବେଷଣ ପାଇଁ ପ୍ରହରାଜଙ୍କ କୋଠଘରେ ପ୍ରବେଶ ପାଇଁ ଆବେଗରେ ଉଦ୍ୟତ ହେଲେ । କିନ୍ତୁ ଦେଖିଲେ ସୌମ୍ୟା ରମାଙ୍କର ଅବିନ୍ୟସ୍ତ କେଶ, ଆର୍ଦ୍ର ବଦନ, ଲୋତକାକୁଳ ଚକ୍ଷୁ । ସମସ୍ତ ପୂଜା ସାମଗ୍ରୀ ବିପର୍ଯ୍ୟସ୍ତ । ବଞ୍ଚିତ ହେଲେ ସାମ୍ବାଦିକ ଗଣ । ଅପେକ୍ଷା କଲେ ପରସ୍ଥିତିର ସ୍ରୋତକୁ ।

କୁଣ୍ଠିମତି ରମା ବ୍ୟସ୍ତ ହେଲେ । ପୂଜା ପୀଠରେ ଶଙ୍ଖଧ୍ୱନି ହୁଳ ହୁଳି, ତାଙ୍କୁ ଅସହ୍ୟ ଲାଗୁ । ବ୍ରାହ୍ମଣଙ୍କ ପ୍ରଣବ ଧ୍ୱନିରେ ଅନ୍ତରୀକ୍ଷ ହେଲା କମ୍ପମାନ । କଣ ବିଷ୍ଣୁ ଆଜି ଅପୂଜା ରହିବେ ? ଉପାୟ ସ୍ଥିର କଲେ । ସଂଗ୍ରହ କଲେ ନାରିକେଳ ଆଉ ପକ୍ୱ-ରମ୍ଭା । ତୋଳି ଆଣିଲେ ସୁଗନ୍ଧ ପୁଷ୍ପ । ସଜାଡିଲେ ଧୂପ ଓ ଦୀପ । ସ୍ୱାମୀ ବ୍ୟଗ୍ର ହେଲେ । ପୂଜା ବିଧି କଣ ହେବନାହିଁ ?

ନିଶ୍ଚୟ ହେବ । ନରମ ଗଳାରେ ଉତ୍ତର ଦେଲେ ରମା । ଏଇ ଶୁଭୁଛି ପୂଜା ସମାପ୍ତିର ଶଙ୍ଖଧ୍ୱନି । ଆଉ ଦେବ ଅର୍ଚ୍ଚନା ହେବ କପରି ?

ଓଷ୍ଠରେ ହସ ଫୁଟାଇ ରମା ଦେଖି ସ୍ୱାମୀଙ୍କୁ ଅନୁରୋଧ କଲେ—ଆପଣ ଏଇଠି ବସନ୍ତୁ । ଆଜି ଏ ଅର୍ଚ୍ଚନାର ଦେବତା ଆପଣ । ଆପଣ ମୋ ଆରାଧ୍ୟ ବିଷ୍ଣୁ । ଏକ ଅମାବାସ୍ୟା ଆପଣଙ୍କୁ କରିଥିଲା ନିର୍ଜ୍ଜୀବ । ମୋର ଅର୍ଚ୍ଚନାରେ ସେହି ନିର୍ଜ୍ଜୀବ ହେବେ

ସଜାବ । ପୁଣି ହେବ ପ୍ରାଣ ପ୍ରତିଷ୍ଠା । ମୋର ସିନ୍ଦୂର ଟୋପା ରହିବ ଅକ୍ଷୁର୍ଣ୍ଣ ।

ଶାବନ୍ତ ବିଷ୍ଣୁ ପୂଜା ସମାପ୍ତ ହେଲା ଯଥା ବିଧିରେ । ସକଳ ସଧବା ଏ ଦୃଶ୍ୟରେ ହେଲେ ହର୍ଷିତ । ଆଜ ସମସ୍ତେ ରମାଙ୍କର ପାଣ୍ଡିତ୍ୟକୁ କଲେ ପ୍ରଶଂସା ବହୁତ ।

---

ଦ୍ର : ଷ୍ଟ୍ର :—ଦକ୍ଷିଣ ଓଡ଼ିଶାରେ ଜ୍ୟେଷ୍ଠ ଅମାବାସ୍ୟା ଦିନ ସାବିତ୍ରୀ ବ୍ରତ ପାଳନ କରାଯାଏ । ଏହି ବ୍ରତ ପାଳନ ପାଇଁ ଭଉଣୀମାନଙ୍କ ନିକଟକୁ ଭାଇମାନେ କିଛି ନା କିଛି ଅର୍ଥ କିମ୍ବା ପୂଜା ସାମଗ୍ରୀ ପଠାଇଥାନ୍ତି । କିନ୍ତୁ କେହି ଯଦି ଏହା ପଠାଇ ପାରେ ନାହିଁ, ତେବେ ସେହି ଭାଇମାନଙ୍କର ମୃତ୍ୟୁ ହୋଇଛି ବୋଲି ଭଉଣୀ ଘରର ସମସ୍ତେ ଧରି ନିଅନ୍ତି । ଏହି ଭୁଲ ଧାରଣା ସାଧାରଣତଃ ଗାଁ ଗହଳରେ ଚଳି ଆସୁଛି ।

# କାଳୀ କନ୍ୟା

କନ୍ୟାଟି ରଙ୍ଗରେ କାଳୀ ବୋଲି ବର ଘରୁ ଘନ ଘନ ଆପତ୍ତି ।

× × × ×

ବାବୁ କଲିକତା ପ୍ରେସିଡେନ୍ସି କଲେଜରେ ପଢିଲା ବେଳରୁ କନ୍ୟାର ପିତା ତଲବ ତେଣ୍ଡି ତେଣ୍ଡି ହାଲିଆ ହୋଇଛନ୍ତି । ଏଣିକି ବାବୁ ହାକିମ ହେଲେଣି ବୋଲି କଥା କଥାକେ କହନ୍ତି —କନ୍ୟାଟି ଆବଶ୍ୟକ ଅନୁଯାୟୀ ପାଠପଢ଼ି ନାହିଁ । ଅଶିକ୍ଷିତା । ତାଙ୍କ ଭଳି ସଭ୍ୟ ଗୋଷ୍ଠୀରେ ଚଳିବା କନ୍ୟା ପକ୍ଷରେ ଅସମ୍ଭବ ହେବ । ବେଳେ ବେଳେ ବାବୁଙ୍କ ଘରୁ କଥା ଉଠେ—ପୁଅ ସାଙ୍ଗକୁ କନ୍ୟା ଠିକ୍ ମାନିବ ନାହିଁ । ଏଣିକି ତାଙ୍କ ଯାନ ବାହାନର ଚଳାଚଳ ହେବ । ଇମିତିକା ପୁଅ ସହିତ କାଳୀ କନିଆଟିଏ ଯୋଡି ଦେଲେ କଣ ସୁନ୍ଦର ହେବ ?

ଇମିତି ଇମିତି କେତେ କଥା ଶୁଣିଲେ କନ୍ୟା ପିତାଙ୍କର କଲିଜା ଦୋହଲି ଯାଏ । କଥାର ଖିଅ ସେ ଆଉ ଧରି ପାରନ୍ତି ନାହିଁ । ବସ୍ତୁର ଶୂନ୍ୟ ହୋଇ କେବଳ ଅପେକ୍ଷା କରି ରହନ୍ତି । ବର ପକ୍ଷର ସକଳ ଦାବୀକୁ ଗ୍ରହଣ କରି ଚାଲନ୍ତି । ଆଜ ବଳିରେ ଇଟେଣ୍ଟରଭ୍ୟୁ ଦେବାକୁ ହେବ । କାଲି କଟକ, ପଦ୍ମରଦନ ପୁଅର ଦେହ ଅସୁସ୍ଥ ବୋଲି ଔଷଧ ପଥ୍ୟ ଖର୍ଚ୍ଚ ଇତ୍ୟାଦି, ଇତ୍ୟାଦି ସରକାରୀ କର୍ମଚାରୀଙ୍କୁ ଲାଞ୍ଚ ଦେଲାଭଳି ସବୁ ନିୟମିତ ଭାବରେ ଯୋଗାନ୍ତି । ନୋହିଲେ ବାହା କଥାର ମଙ୍ଗ ଏପଟ ସେପଟ ହୋଇପାରେ ।

ଏଣେ କନ୍ୟା ଚିନ୍ତାକରେ—ସେ କାଳୀ ବୋଲି ତାଙ୍କ ଉପରେ ଅଭିଯୋଗ । କେତେ ହନ୍ତସନ୍ତ । ତେବେ ସେ ଯାହାକୁ ବାହା କରିବେ ସେ କଣ କନ୍ଦର୍ପ ? ତାଙ୍କର ତ ଆଖିର ଶକ୍ତି ନାହିଁ ବୋଲି ଇଞ୍ଚେ ବହଳର ଚଷମା ପିନ୍ଧନ୍ତି । ନାକଟା ଚେପଟା ଯେ ପେଚାଠାରୁ ଅସୁନ୍ଦର । ମୁଣ୍ଡଟା ମଧ୍ୟ ଚନ୍ଦରା । କେବଳ ପାଠପଢ଼ି ହାକିମ ବନିଛନ୍ତି । ତାହା ମଧ୍ୟ ତାଙ୍କ ପିତାଙ୍କ ଧନରେ । ତେବେ କାହିଁକି ଏସବୁ ? ପୁଣି ଚିନ୍ତା କରନ୍ତି—ଏ ସବୁ କଣ ଅଲକ୍ଷଣା କଥାଗୁଡ଼ିକ ଚିନ୍ତା କରୁଛନ୍ତି । ଯେତେ ହେଲେ ବାବୁ ତାଙ୍କର ସ୍ୱାମୀ ହେବେ । ଶେଷରେ ଜଭକୁ କାମୁଡି ନିଜ ଦୋଷକୁ ନିଜେ କ୍ଷମା ଦିଅନ୍ତି ।

କନ୍ୟାଟି କାଳୀ ବୋଲି ବାବୁଙ୍କ ମନ ଫିକା । ତାର ସୁଯୋଗ ନେଇ ତାଙ୍କ ପରିବାର ଯୌତୁକ ଆଶାରେ ଅନେକ ଖାପ ଛଡ଼ା କଥା କହନ୍ତି । ଯାହା କହିଲେ ମଧ୍ୟ କନ୍ୟା ପିତା ସବୁ ନିର୍ଗିବ ଭଳି ସହି ଯାଉଥିଲେ ।

ସୁବିଧା ଅସୁବିଧା ଭିତରେ ଅନେକ ଦିନ କଟିଗଲା । ମୋଟା ଯୌତୁକ ଦେବାକୁ କନ୍ୟା ପିତା ରାଜି ହେଲେ । ଶେଷରେ ଏକ ଶୁଭ ଦିନରେ ସେମାନଙ୍କର ପୁଆଣି କାର୍ଯ୍ୟ ଶେଷ ହେଲା ।

କନ୍ୟା ପିତା ଘରର ଗୋଟିଏ କୋଣରେ ବସି ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ମନେ ମନେ ଭାରି ଖୁସି ହେଲେ । ଦୀର୍ଘ ଦିନର ଝୁଣ୍ଟାର ସମାପ୍ତି ଘଟିଲା । ଯାହା ହେଉ ଏତେ ଚଲବ ଚେଷ୍ଟା ଚେଷ୍ଟା ଶେଷରେ ମୁକ୍ତ ହେଲେ । କିନ୍ତୁ ଅତୀତ ତାଙ୍କ ମାନସ ପଟରେ ନାଚି ଉଠିଲା – ହରିହର ବାବୁଙ୍କ ଯେଉଁଦିନ ମୃତ୍ୟୁ ହେଲା ସେହିଦିନଠାରୁ ପିଲାଟି ଉଦ୍‌ଭ୍ରାନ୍ତ ଭାବେ ଘୂରିବାକୁ ଲାଗିଲା । ବାପଛେଉଣ୍ଡ ପିଲାଟି ଉପରେ ଦୟାବନ୍ତ ଅଭିରାମ ବାବୁ ତାର ସକଳ ଯତ୍ନ ନେଲେ । ତାଂକର ଯତ୍ନରେ ପିଲାଟି ସକଳ ଧନ୍ଦା ତ୍ୟାଗ କରି ଅଧ୍ୟୟନରେ ନିପୁଣତା ହାସଲ କରିବାରେ ଲାଗିଲା । ମନରେ ଆଶା ବାନ୍ଧି ପିଲାଟିକୁ ପଢ଼ାଇବାରେ ଲାଗିଲେ ଏବଂ ନିଜର ନାବାଳିକା କନ୍ୟାର ହାତକୁ ହାତ ମିଶାଇ ଦେଇଥିଲେ । ମନେ କରିଥିଲେ ତାଂକ ଜୀବନରେ କନ୍ୟାପାଇଁ ଯାହା କରିବାର ଥିଲା ତାହା ସେ ଚତୁରତାର ସହିତ ହାସଲ କରି ପାରିଲେ । କିନ୍ତୁ...କି...ନ୍ତୁ ।

ତେଣିକି କନ୍ୟାର ମନରେ ଭାରି ଆନନ୍ଦ । ଗାଁଉଲି ଝିଅଟିଏ ହୋଇ ଜଣେ ଆଇ. ସି. ଏସ୍. ଅଫିସରଂକର ହାତ ଧରିଛି । କଣ କମ ଗୌରବର କଥା !

× × ×

ପୁଷ୍ପା ଆଜ ଜଣେ ହାକିମର ସ୍ତ୍ରୀ । ତଥାପି ପରିବାରର ସେବା ପାଇଁ ସେ ସ୍ୱାଙ୍କର ନିଯୁକ୍ତ କରିନାହିଁ । ନିଜେ ଯେତେଟା ପାରିବା ପାଇଁ ଯୋଗ୍ୟ ସେତେଟା କାର୍ଯ୍ୟ କରି ଚାଲିଛି । ଶାଶୁ, ଶ୍ୱଶୁର, ସ୍ୱାମୀଙ୍କର ଖୁସି ସକାଶେ ନିଜକୁ ତିଳ ତିଳ କରି ବିନିଯୋଗ କରି ଭଲ ଚାଲିଛି । ତଥାପି ସେ ପାରିଲାନି । ସ୍ୱାମୀ ତାକୁ ହତାଦର କଲେ । ବାହ୍ୟରେ ହସ ଥିଲେ ମଧ୍ୟ ଅନ୍ତର ଦେଇ ପୁଷ୍ପାକୁ ଭଲ ପାଉନଥିଲେ । ନିଜର କୃଷ୍ଣବର୍ଣ୍ଣା ସ୍ତ୍ରୀର ଦର୍ଶନ ତାଙ୍କ ମାନସ ପଟରେ ଘୃଣାର ଜୀବାଣୁ ସୃଷ୍ଟି କରୁଥିଲା । ମନେ ହେଉଥିଲା ସତେ ଯେମିତି ତାଙ୍କ ସାମାଜିକ ମର୍ଯ୍ୟାଦା କ୍ଷୁର୍ଣ୍ଣ ହୋଇଛି । ଆଜ ଜଣେ ହାକିମ ସହିତ ସମ୍ମୁଖୀନ ହେବାକୁ ସେ ଦୁର୍ବଳ ମନେ କରନ୍ତି । ସସ୍ତ୍ରୀକ କୌଣସି ଉତ୍ସବରେ ଯୋଗଦେବାକୁ ମନରେ କଣ୍ଟକିତ ହେଲାପରି ଅନୁଭବ କରନ୍ତି । ଶାଶୁ ମଧ୍ୟ କେଜାଣି କାହିଁକି ତା ଉପରେ ଗର ଗର ହୁଅନ୍ତି । ତଥାପି ମୁଣ୍ଡ ପୋତି ଦେଇଛି । କ୍ଷମା ମାଗିଛି । ଅନେକ ଥର କ୍ଷମା ମାଗିଛି । କିନ୍ତୁ କ୍ଷମା ନାହିଁ ।

ସ୍ୱାମୀ ତାର ସୁଦୂର ବମ୍ବେ ଚାଲିଗଲେ । ଗ୍ରାମକୁ ଆସିବା ବନ୍ଦ ହୋଇଗଲା । ତାଙ୍କର ଖବର ବି ଜଣା ପଡ଼ିଲା ନାହିଁ । କିନ୍ତୁ ନଇନାର ଚିଠିରୁ ଯାହା ଜାଣିହୁଏ । ତଥାପି ଆଜ କାଲି ନଇନା ମଧ୍ୟ ଚିଠି ପତ୍ର ଦେଉନାହିଁ ।

ପୁଷ୍ପା ଲାଗି ଘରର ସୁଅ ଘର ଗୁଡ଼ ଗୁଳିଗଲା । ଅଲକ୍ଷ୍ମୀଟିକୁ ବୋହୂ କରି ଆଣିଲ ବୋଲି ଶାଶୁ ସବୁବେଳେ ମୁହଁ ଫୁଲେଇ ହୁଅନ୍ତି । ପୁଷ୍ପା ହେଲା ନାଚାର । ଚନ୍ତା ଆଜ ଦୁଃଖର କଷାଘାତ, ତା ଶରୀରର ଉପରେ ଆରମ୍ଭ କଲା ଅତ୍ୟାଚାର । ନିଦ୍ରାଳି କଷ୍ଟର

ନଟୋଳ ଦେହଟିରେ ଉପସ୍ଥିତ ହେଲା ଦୁର୍ବଳତା ଫଳତଃ । ଷୋଡ଼ଶୀର ଜଠର ଦେଶରେ ଆରମ୍ଭ ହେଲା ଏକ ବହ୍ନିଶିଖ ଜ୍ୱାଳା । ପ୍ରାପ୍ତ ହେଲା ଅକାଳ ବାର୍ଦ୍ଧକ୍ୟ । ଦୀପ୍ତି ପୁଲକିତ ଚକ୍ଷୁ ଦ୍ୱୟ ଲଜ୍ଜାରେ ଆତ୍ମଗୋପନ କରିବାକୁ ଖୋଜିଲେ କଙ୍କାଳ ଅଧର ଘୋର କୋଟରିକାରେ । ସ୍ଫୀତ ଗଣ୍ଡଦେଶ ଉଦ୍‌ବେଗର ସହିତ ଆତ୍ମଗୋପନ କଲେ ଦୁଇ ହନୁଅସ୍ଥି ଭିତରେ । ବର୍ତ୍ତୁଳ ମାଂସାଳ ବାହୁମୂଳର ସ୍ଫୀତ ସ୍ତୂପ ହେଲା ସ୍ଥାନଚ୍ୟୁତ । ବିପୁଳ ନିତମ୍ବିନୀ ହେଲେ କ୍ଷୀଣାଙ୍ଗୀ । ବକ୍ଷଦେଶର ଉତ୍ତୁଙ୍ଗ ମାଂସପେଶୀ ହେଲେ ଅସମ୍ଭବ ଭାବେ ସଙ୍କୁଚିତ । ଆଜି ଦୁଃଖ ଜର୍ଜରିତ ଅନ୍ତର ଆତ୍ମା, ଆରମ୍ଭ କଲା ଏକ ଧ୍ୱନିହୀନ ଆର୍ତ୍ତନାଦ । ପିତା ଥିଲେ ପିନା ତାର ଦୁଃଖ ବୁଝନ୍ତେ । କିନ୍ତୁ କାଳୀ କନ୍ୟାଙ୍କୁ ତାଙ୍କର ଅତଳ ସମୁଦ୍ରରେ ଭସାଇ ଦେଇ ଅଜଣା ରାଇଜକୁ ଚାଲିଗଲେଣି ।

ପୁଷ୍ପା ଚିନ୍ତା କଲା ଏ ଦୁର୍ବଳ ଶରୀରକୁ ଧାରଣ କରି ଆଉ ବେଶୀ ଦିନ ଶାଶୂଘରେ ରହିଲେ ଆଉ ଚଳି ପାରିବ ନାହିଁ । ତାକୁ ତାର ପଥ ପରିଷ୍କାର କରିବାକୁ ହେବ । ଏଇ କାଳୀ କନ୍ୟା ଗୋଟିଏ ଘରେ ରହି ଅସରନ୍ତି ଦୁଃଖର କାରଣ ହେବ ନାହିଁ । ତାର ଭାଇକୁ ଅନୁରୋଧ କରିବ । ସେଠାକୁ ଚାଲିଯିବ, ଆଉ ଭାଉଜଙ୍କୁ ତାଂର ଦୁଃଖର କଥା କହି ସେଠାରେ ତାର ଜୀବନ କଟାଇବ । ଆଉ ତାର ନଶ୍ୱର ଭ୍ରୁଣଟିକୁ ବଞ୍ଚାଇବାକୁ ଚେଷ୍ଟା କରିବ ।

ଅନେକ ଦିନ ହେଲା ସ୍ୱାମୀଘରୁ ଆସି ଭାଇ ପାଖରେ ଅଛି । ପୁଷ୍ପାକୁ ଦେଖିଲେ ଭାଇ ତାର ତରଳି ଯାନ୍ତି । ଶିଶୁ ଭଣଜାଙ୍କୁ

ଦେଖିଲେ ଦାର୍ଶନିକପର ଆଶ୍ୱାସନା ଦିଅନ୍ତି । ତଥାପି ସ୍ୱଉଜ-
ଙ୍କର କଣ ଦେହ ସହୁଛି ? ସେ ଦେଖ କହନ୍ତି—ସାଇ
ବୋଲି ହିନା ମାସେ ଦୁଇ ମାସ । ବର୍ଷ ବର୍ଷ ଦୁଇ ଦୁଇ ଜଣଙ୍କୁ
ପୋଷିବା ଆଜକାଲି ସହଜ ? ପୁଷ୍ପାର ସ୍ଥିତି କରୁଣ ହୁଏ । ତଥାପି
ସାଇତ ଅନ୍ତି, ସ୍ୱଉଜ କଣ କରିବ ? କିନ୍ତୁ ଏଇଠି ମଧ୍ୟ ବେଶୀ
ଦିନ ସେ ରହି ପାରିବ ନାହିଁ । ସାଇନାଙ୍କୁ ସବୁ ଜଣାଇଲା ପୁଷ୍ପା ।
ଯେଉଁ ଭାଷାରେ ପୁଷ୍ପା ତାର ଦୁଃଖ ବର୍ଣ୍ଣନା କଲା ସେଥିରେ ବିଶେଷ
ଭାବରେ ବିଚଳିତ ହେଲେ । ପୁଷ୍ପାର ଲୋତକାକୁଳ ନୟନର
ନିବେଦନକୁ ସେ ଭଲ ଭାବରେ ହୃଦୟଙ୍ଗମ କରି ପାରିଲେ ।
ଯଥେଷ୍ଟ ଚେଷ୍ଟା କରି ଜଟକରେ ପୁଷ୍ପା ପାଇଁ ଖଣ୍ଡେ ଚାକିରି
ଯୋଗାଡ଼ କରିଦେଲେ । ଏଣିକି ଆଉ କଣ ?

× × × ×

ବେତାର ଯନ୍ତ୍ରରୁ ସଙ୍ଗୀତର ମୂର୍ଚ୍ଛନା ଭାସି ଆସୁଛି । ଶୀତ
ତାପ ନିୟନ୍ତ୍ରିତ କୋଠରୀ । ତାର ଆମୋଦିତ ବାୟୁମଣ୍ଡଳ
ମଧ୍ୟରେ ସ୍ୱାମୀ ସ୍ତ୍ରୀ ସକାଳର ଜଳଖିଆ ସମାପ୍ତ କରିବାରେ
ଲାଗିଛନ୍ତି । ନିଜ ସ୍ତ୍ରୀର ଅଙ୍ଗକାନ୍ତି ଓ ଚର୍ବିଳ ଶରୀର ଦର୍ଶନରେ
ସେ ଗୌରବ ଅନୁଭବ କରୁଛନ୍ତି । ସ୍ୱାମୀ ଭଲ ପାଇବା ଭିତରେ
ସ୍ତ୍ରୀ ଅଙ୍ଗ ସୌଷ୍ଠବର ପ୍ରଭାବରେ ଅନେକ କଥା ଦାବୀ କରିଯାନ୍ତି ।
ବାଧ୍ୟ ଶିଶୁଟି ପରି ସ୍ୱାମୀ ତାହା ଗ୍ରହଣ କରି ନିଅନ୍ତି ।

ହଁ, ଆସନ୍ତା କାଲି ମିସେସ୍ ବାନାର୍ଜିଙ୍କର ଜନ୍ମୋତ୍ସବ ।
ନିମନ୍ତ୍ରଣ ପଠାଯାଇଛି । ମାଟ୍ରିକରଠାରୁ ଆରମ୍ଭ କରି ଫାଇନାଲ୍
ଇଅର ପର୍ଯ୍ୟନ୍ତ ଅନ୍ତରଙ୍ଗ ସହପାଠିନୀ ଥିଲୁ । ମୁଁ ଜଣେ ଉଚ୍ଚ

ଅଫିସରଙ୍କୁ ବାହ୍ବା ହେବା କଥା ଶୁଣି ଭାରି ପ୍ରଶଂସା କରୁଥିଲେ । କାଲି ଯେମିତି ହେଲେ ଖଣ୍ଡେ ପ୍ରଥମ ଶ୍ରେଣୀର ନେକ୍‌ଲେସ୍ ଆଉ ଦୁଇ ଖଣ୍ଡ ଟେରିଲିନ୍ ଶାଢ଼ୀ ଉପହାର ଦେବା ।

ଆରେ, ସୁକରିଟା କେତେ ନିର୍ବୋଧ । ଜଳ ମଦେ ଠିକ୍ ସମୟରେ ନଯୋଗାଇ ମାର୍କେଟ୍‌କୁ ଚାଲିଗଲା । ତର ତର ହୋଇ ସ୍ୱାମୀ ତାର ବଢ଼ାଇଦେଲେ ଗ୍ଲାସେ ଜଳ ତାଙ୍କୁ ।

ଡ୍ରାଇଭରଙ୍କୁ କହନ୍ତୁ କାରଟା ସଜାଡ଼ି ରଖିବ, ଷ୍ଟେସନକୁ ଯିବାକୁ ହେବ । ଆଜି ମିଷ୍ଟର ଏଣ୍ଡ୍ ମିସେସ୍ ପାଣ୍ଡେ ବମ୍ବେ ମେଲରେ ଏଠାକୁ ଆସିବେ । ତାଙ୍କୁ ପାଛୋଟି ନ ଆଣିଲେ ସେ କଣ ଭାବିବେ ? ମିସେସ୍ ପାଣ୍ଡେ ଜଣେ ସୁନାମଧନ୍ୟ ଫିଲ୍ମ୍ ଓଡନ୍‌ସର । ତାଙ୍କ ପାଇଁ ଆମେ ଏଠାରେ ରୋଷେଇ କରିବା ନାହିଁ । ନେଇଯିବା କ୍ଲବ୍‌କୁ । ସେଠାରେ ରମ୍, ହୁଇସ୍କି, ବ୍ରାଣ୍ଡି ଜିନ୍, ଆମ୍ଲେଟ୍, ମାଂସ ଯାହା ଚାଲିବା କଥା ସେଇଠି ଚାଲିବ । ତା ସାଙ୍ଗକୁ ବଲ ଡ୍ୟାନ୍‌ସଟା ଖୁବ୍ ହେବ । କଣ କହୁଛନ୍ତି ? ସ୍ୱାମୀ ତାଙ୍କର ବାଧ୍ୟ ଶିଶୁଟି ଭଳି ମୁଣ୍ଡ ହଲାଇ ସ୍ୱୀକୃତି ପ୍ରଦାନ କଲେ ।

ସୁକରର ଟୋକାଟା ମାର୍କେଟରୁ ଫେରିଲା—ଆରେ ଏତେ ଲେଟ୍ କଲୁ କାହିଁକି ? ହେଉ ପ୍ରସ୍ତୁତ କରେ ଦୁଇ ଗ୍ଲାସ ବିଅର୍ । ଅଣ୍ଡା ଅଛି କି ନାହିଁ ? ଜିନ୍, ଆଉ କଲିଜା ଆସିଲା ?

ହଁ, ଶୁଣନ୍ତୁ କାଲି ରାତି ଆସିଥିଲା ମୋର ଭାଇ କଲେଜରେ ପଢ଼ିବା ପାଇଁ ଆମର ସେଠାରେ ସୁବିଧା ନାହିଁ ।

ଏଠି ଉତ୍ତା ପଡ଼ିବ । ତା ପିଚ୍ଛା ବା କଣ ଖର୍ଚ୍ଚ ହେବ ? ଏଠାରେ ପଡ଼ୁ । କଣ କହୁଛନ୍ତି ? ବାବୁ ହଁ ଉତ୍ତରିଲେ ।

ହଁ ଡ୍ରାଇଭରକୁ ପଠାନ୍ତୁ ବାଲ୍‌କୋନ ପାଇଁ ସ୍କରଗୋଟି ସିଟ୍ ରିଜର୍ଭ କରି ଆଣିଥିବ । ଆଜି ଏତ୍ରି ନୂଆଁ ବର୍ଷର ପ୍ରଥମ ଦିନରେ "ରାଜୁ ମେରା ସାଥୀ" ପଡ଼ିଛି । ତୁମେ ସିନା ଖୁବ୍ କମ ପିକ୍‌ଚର ଦେଖୁଛ । କିନ୍ତୁ ମିଷ୍ଟର ପାଣ୍ଡେ ପ୍ରତ୍ୟେକ ପିକ୍‌ଚରକୁ ଯାନ୍ତି । ସେ ଦିନ ସେ କହୁଥିଲେ ତୁମର ସ୍ୱାମୀ ଭଲ ବଲ୍‌ଡ଼ାନସ କରି ଜାଣନ୍ତି ନାହିଁ । ମିଷ୍ଟର ପାଣ୍ଡେ ଭଲ ଡ୍ୟାନସ କରି ଜାଣନ୍ତି । ସେ ମୋ ସହିତ ବଲଡ୍ୟାନସ କରିବାକୁ ଭଲ ପାଆନ୍ତି । ଆଜି ଦେଖିବେ ମୁଁ କେମିତି ବଲ୍‌ଡ଼ାନସ୍ କରି ସମସ୍ତଙ୍କୁ ଖୁସି କରାଇ ପାରିବ । ପିକ୍‌ଚରରୁ ଏସବୁ ଅନୁକରଣ କରିହୁଏ ।

ବାବୁ ବଡ଼ ହାକିମ । ଦରମା ସାଙ୍ଗକୁ ଖୁବ୍ ଉପୁରିମିଳେ । ତେଣୁ ତାଙ୍କର ସ୍ତ୍ରୀ ସହିତ ଏମିତି କାରବାର ଚଳି ଯାଉଛି । ତଥାପି କେତେବେଳେ କମିତି ହେଡ଼୍ କ୍ୟାସିୟରଠାରୁ ଧାର ଆଣିବାକୁ ପଡ଼ିଥାଏ । କିନ୍ତୁ ଅରୁଣାକୁ ଅମାନ୍ୟ କରି ହୁଏନାହିଁ ।

ଘର ବାହାରୁ କାର୍‌ର ହର୍ଣ୍ଣ ଦେ ଶୁଣାଗଲା । ଅରୁଣାଦେବୀ ଚୌକିରୁ ଉଠି ବାହାରକୁ ଯିବାକୁ ଯାଇଁଲେ ।

ଆରେ କ୍ୟାପ୍‌ଟେନ୍ ବର୍ମା ସସ୍ତ୍ରୀକ ଆସିଛନ୍ତି । ସ୍ୱାଗତଂ, ସ୍ୱାଗତଂ । ଆଜି ଆମର ଭାଗ୍ୟ । ସହାସ୍ୟ ବଦନରେ ଅଭିବାଦନ ଜଣାଇଲେ ଅରୁଣା ।

ଅଭିବାଦନ ଗ୍ରହଣ କରି କ୍ୟାପ୍‌ଟେନ୍ ବର୍ମା କହିଲେ—

Sea Shore ଆଡ଼କୁ ପ୍ରାତଃ ଭ୍ରମଣରେ ଯାଇ ପାରିବେ ? yes, yes ସ୍ବାମୀଙ୍କୁ କହି ଅରୁଣା ଦେବୀ ମିଷ୍ଟର ବର୍ମାଙ୍କ କାର୍‌ରେ ବସି ଚାଲିଗଲେ । ଆଜ ଗଲାବେଳେ ସ୍ବାମୀଙ୍କୁ କହି ଯାଇଥିଲେ—ସବୁ ଠିକ୍ କରି ରଖିଥାନ୍ତୁ । ଆଜ ସନ୍ଧ୍ୟାରେ ପାଣ୍ଡେ ଦମ୍ପତିଙ୍କୁ ପାର୍ଟିକି ଆଣିବା ।

କାହାରିକୁ କିଛି କହିବାର ନଥିଲା । ଅନଭିଜ୍ଞ ଲୋକେ କେତେ ବୁଦ୍ଧିମାନ ହେଲେ ମଧ୍ୟ ଅନେକ ଭୁଲ୍ କରନ୍ତି । ତେଣୁ ଅଭିଜ୍ଞ ଲୋକଙ୍କର ଅନଭିଜ୍ଞ ତୁଳନାରେ ଅନେକ ସମ୍ମାନ ଥାଏ । ତଥାପି ବାବୁ ନିଜେ ଅରୁଣାକୁ ବାଣ୍ଟୁଛନ୍ତି; ଦୁଃଖ କରିବାର କାରଣ କିଛି ନାହିଁ । ଅରୁଣାର ଚାଲିଚଳନ, ବ୍ୟବହାର ତାର ଖର୍ଚ୍ଚ ବୃତ୍ତର ସୀମା ଟପି ଚାଲୁଛି । ତାର ସେବାରେ ସନ୍ତୁଷ୍ଟ ହେଉ ନାହାନ୍ତି ।

× × × ×

ଅନେକ ଦିନ ବିତି ଯାଇଛି । ସହରୀ ଜୀବନ ପ୍ରତି ଏଣିକି କମିତ କମିତ ବିତୃଷ୍ଣା ଲାଗ ଆସିଲାଣି । ସୁନ୍ଦରୀ ସ୍ତ୍ରୀର ହସକୁ ସେ ବିଷ ମଣୁଛନ୍ତି । ଖାଇବା, ପିଇବା ତାଙ୍କର କମି ଗଲାଣି । ଧୀରେ ଧୀରେ ଚିନ୍ତା ରୋଗ ଗ୍ରାସ କରିବାକୁ ବସିଲା । ଅର୍ଥ ମଧ୍ୟ ତାଙ୍କ ନିକଟରେ ନାହିଁ । ବାବୁ ନାମରେ ଅନେକ ଧାର ହୋଇଗଲାଣି । ଏଣିକ ଏଣିକ ଅସଲ୍ କଥା ଗୁଡ଼ିକ ହଦାରେ ପଡ଼ିସିବ ।

ହଠାତ୍ ହଠାତ୍ ବାବୁ ଅସୁସ୍ଥ ହୋଇ ପଡ଼ିଲେ । ହଠାତ୍ ବମ୍ବେ ପୋର୍ଟରୁ କଲ୍ ଆସିଲା । ଅରୁଣାଦେବୀ କଲ୍ ବୁକ୍ କରିଛନ୍ତି । ଚୁରାନ୍ତ ଅବସ୍ଥାରେ ରସିଭର୍ ଧରିଲେ ବାବୁ ।

—ହ୍ୟାଲୋ ! ହ୍ୟାଲୋ !
—କିଏ କହୁଛନ୍ତି ?
—ମୁଁ ଅଶୋକ ଦାସ ।

—ସ୍ୱାଗତଂ ! ସ୍ୱାଗତଂ ! ହଁ କମ୍ପାନୀ ସହିତ ମୋର କଣ୍ଟ୍ରାକ୍ଟ ଅନୁସାରେ ମୁଁ ଛଅ ମାସ ପାଇଁ ହଲିଉଡ୍ ଯିବାକୁ ହେବ । ସେଠାରେ ଏହି ବର୍ଷର ଫିଲିମ୍ ସୁଟିଙ୍ଗ ମେ ହଁ ମାସରେ ମୁଁ ହିରୋଇନ୍ ପାର୍ଟ ନେଉଛି । ତେଣୁ ଆପଣଙ୍କ ଏହି ଅବସ୍ଥାରେ ନିଜକୁ ନିୟୋଜିତ କରିପାରୁ ନଥିବାରୁ ଦୁଃଖିତ । ଆଶାକରେ ଗୃହର ଚୋକାଟା ସବୁ କାର୍ଯ୍ୟ ତୁଲାଇ ପାରିବ । ନୋହିଲେ ଆଜି ଜଣେ ଗୃହର ନିଯୁକ୍ତ କରିବେ । yes, good—bye.

ରୁଗ୍ଣ ଶଯ୍ୟାରେ ଉତ୍ତେଜିତ ହୋଇ ଉଠିଲା ସ୍ତ୍ରୀ ହୋଇ ମଧ୍ୟ ସ୍ୱାମୀର ରୁଗ୍ଣ ଅବସ୍ଥାରେ ହଲିଉଡ୍ ଫିଲମରେ ହିରୋଇନ ପାର୍ଟ କରିବାକୁ କୁଣ୍ଠାବୋଧ ନାହିଁ । ଧନ୍ୟ ତୁମେ ଗୌରାଙ୍ଗୀ ! ଧନ୍ୟ ତୁମର ଅଂଗସୌଷ୍ଠବ ।

ଆକସ୍ମିକ ଜ୍ୱରର ଉତ୍ତାପ ବୃଦ୍ଧି ହୋଇଗଲା । ବାବୁ କମ୍ପଡ଼ ହୋଇ ତଳେ ପଡିଗଲେ । ଗୃହର ବାପୁଡାଟି ଉଠାଇ ନେଇ ପଲଙ୍କରେ ଯତ୍ନରେ ଶୁଆଇ ଦେଲା । ଡାକ୍ତରଙ୍କୁ ମଧ୍ୟ ଖବର ଗଲା । ଚିକିତ୍ସା ମଧ୍ୟ ଆରମ୍ଭ ହେଲା । ଡାକ୍ତର କହିଲେ— ଏଥିରେ କୌଣସି ରୋଗର ଲକ୍ଷଣ ନାହିଁ । କେବଳ ମାନସିକ ଅଶାନ୍ତି ଓ ଉଦ୍‌ବେଗର କାରଣ । ତେଣୁ କଣ୍ଟ୍ରୋଲ ଅପେକ୍ଷା କରିବାକୁ ପଡ଼ିବ । ମୁଁ ଇଞ୍ଜେକ୍‌ସନ୍ ଦେଇ ଗଲି । ଏହି ତିନ ପ୍ରକାର ଟେବ୍ଲେଟ୍ ରଖିଥା । ଉତ୍ତାପ ଅଧିକ ହେଲେ ଦାଲି

ବଟିକାଟା ଦେବୁ । ଆଉ ଯଦି କମିଯାଏ ତେବେ ଦେବୁନାହିଁ । ଚାକର ଚୋକାଟା ଭାବିଲା—ଏକା ଥରକେ ଦୁଇଟି ଟେବ୍ଲେଟ୍ ଦେଇ ଦେଲେ ଜ୍ୱର କମିଯିବ ତ ! ସେମିତି କଲା । ବାବୁଙ୍କର ଜ୍ୱର କମିବା ପରିବର୍ତ୍ତେ ବଢ଼ିବାକୁ ଲାଗିଲା । ବାବୁ ହାତ ମୂଠା ମୁଠା କରି ଦାନ୍ତ ଉଗଡ଼ିଲେ ! ପ୍ରଳାପ ଆରମ୍ଭ କଲେ । ଚାକର ଟୋକା ଉପାୟ ନ ପାଇ ଧାଇଁଗଲା ଡ଼ାକ୍ତରଙ୍କ ପାଖକୁ । ଡ଼ାକ୍ତର ଔଷଧ ପ୍ରୟୋଗ କରି ବାବୁଙ୍କର ହୋସ ଫେରାଇ ଆଣିଲେ । ବାବୁ ଅଫିସକୁ ଫେରିଯାଇ କଣ ଗୁଡ଼ାଏ ଭାବୁଥିଲେ । ଚାକର ଟୋକାଟି ଲଫାଫା ଖଣ୍ଡେ ବାବୁଙ୍କୁ ବଢ଼ାଇ ଦେଲା ।

ବାବୁ ଦେଖିଲେ ଅରୁଣା ପତ୍ର ଦେଇଛି ହଲିଉଡ଼ରୁ । ଲେଖିଛି—

ମହାଶୟ,

ହଲିଉଡ଼୍ ନିବାସିନୀ ଅରୁଣାର ନମସ୍କାର ଗ୍ରହଣ କରିବେ । ମୁଁ ବମ୍ବେ ସହରରେ ରହି ଭାବିଥିଲି ଏ ଏକ ବିଭବଶାଳୀ ସହର । କିନ୍ତୁ ହଲିଉଡ଼୍ ମୋର ଆଖି ଖୋଲି ଦେଇଛି । ଏଇଠି ଚଳଚିତ୍ର ଜଗତରେ ମୁଁ ବେଶ ନାମ ଅର୍ଜନ କରିଛି । ଏଠାର ସହରର ସାଜସଜ୍ଜା ବଡ଼ ଚମତ୍କାର । ଆମୋଦ ପ୍ରମୋଦ ପାଇଁ ଏହି ବିଳାସମୟୀ ନଗରୀ ଏକ ଭୂସ୍ୱର୍ଗ ଏଠାର ରମ, ବିଅର, ହୁଇସ୍କି ବ୍ରାଣ୍ଡି, ଜିନ୍‌ର ଉଷ୍ମ ଉତ୍ତାପ ହଜାର ହଜାର ସମ୍ଭ୍ରାନ୍ତ ଯୁବକଙ୍କୁ କରେ ପାଗଳ । ନାରୀର ଯଥେଷ୍ଟ ସ୍ୱାଧୀନତା ରହିଛି ଏହି ଦେଶରେ । ଇଚ୍ଛା ମୁତାବକ ବଲ୍‌ଡ଼୍ୟାନ୍‌ସରେ ଭାଗ ନେବା ପାଇଁ ଏଠାର କ୍ଲବ୍‌ଗୁଡ଼ିକ ଦିବାନିଶି ଉନ୍ମୁକ୍ତ । ବିଭବମୟୀ

ନଗଣ୍ୟର ଜଳସମସ୍ୟୀ ରଙ୍ଗମଞ୍ଚରେ ସମ୍ଭ୍ରାନ୍ତ ଶ୍ରେଣୀର ଚତୁର ତରୁଣୀ ହୁଅନ୍ତୁ ଆମ୍ଭହର । ଯାହା କେମ୍ନେ ଭଲ ସହରରେ ଏକ ସ୍ୱପ୍ନ ଓ ଭାରତ ଭଳି ଦେଶରେ କଳ୍ପନାଶତ ।

ଏଇଠି ସବୁବେଳେ ଯେ ମୋ ସହିତ ଡ୍ୟାନ୍‌ସରେ ଭାଗ ନଅନ୍ତୁ ସେ ହେଉଛନ୍ତି ସାର୍ ରାଲେ । ସାର୍ ରାଲେ ମୋ ପିଛୁ ଅଜସ୍ର ଅର୍ଥ ଖର୍ଚ୍ଚ କରନ୍ତି । ତାଙ୍କର କେତେଟା ଫ୍ୟାକ୍‌ଟେରୀ ଏ ଆମେରିକା ମହାଦେଶରେ ଅଛି ତାହା ଆହୁରି ମୁଁ ଜାଣି ପାରିନି । ଯେତେବେଳେ ମୁଁ ଯାହା ଚାହୁଁଛି ସବୁ ଯୋଗାଇବା ପାଇଁ ସମୟର ବ୍ୟବଧାନ ନଥାଏ । ମୁଁ ବର୍ତ୍ତମାନ ଯେଉଁ ପ୍ରାସାଦରେ ରହୁଛି, ହୁଏତ ଭାରତର କୌଣସି ମହାରାଣୀ ଭାଗ୍ୟରେ ଏହା ସମ୍ଭବ ହୋଇ ନଥିବ । ଯାନବାହାନ, ଅଧସ୍ତନ କର୍ମଚାରୀଙ୍କୁ ଅଙ୍ଗୁଳୀ ନିର୍ଦ୍ଦେଶ ଦେବା ପାଇଁ ସମସ୍ତ ନାହିଁ । ବନ୍ଧୁ ଚର୍ଚ୍ଚାର ସୀମା ନାହିଁ । ସମ୍ବର୍ଦ୍ଧନା ସଭାରେ ଯୋଗଦେବା ପାଇଁ ସମୟ ନାହିଁ । ଏ ସୁଯୋଗ ହରାଇବା ମୁଁ ଚାହେଁ ନାହିଁ । ଆପଣ ଯଦିଓ ହାକିମ ତଥାପି ତାଙ୍କ ଆଗରେ କିଛି ନୁହଁନ୍ତି । ତେଣୁ ମୁଁ ତାଙ୍କର ସ୍ତ୍ରୀ ହୋଇ ରହିବାକୁ ଚାହେଁ । ଆପଣଙ୍କ ଠାରୁ ବିଦାୟ । ମୋର ଏ କଠୋର ନିଷ୍ପତ୍ତିକୁ କ୍ଷମା କରିବେ ।

ଏଠାରେ ଉଲ୍ଲେଖ କରିପାରେ—ଆମର କଣ୍ଟ୍ରାକ୍ଟ ମ୍ୟାରେଜର ଡେଟ୍ ଉତ୍ତୀର୍ଣ୍ଣ ହୋଇ ଯାଇଛି ।

ଆପଣଙ୍କଠାରୁ ସ୍ତ୍ରୀ ଭୂମିକାରୁ ବିଦାୟ ନେଲେ ମଧ୍ୟ ବନ୍ଧୁତ୍ୱ ରହିବ ବୋଲି ଆଶା କରେ ।

ଶେଷରେ ମୋର ଅନୁରୋଧ ଆପଣ ଥରେ ହଲିଉଡ୍ ଭ୍ରମଣରେ ଆସନ୍ତୁ ଓ ଆପଣଙ୍କର ଅଷ୍ଟଚର ଅରୁଣାର ଆତିଥ୍ୟ ଗ୍ରହଣ କରି ଭୂସ୍ୱର୍ଗର ତୃପ୍ତି ଅନୁଭବ କରନ୍ତୁ ।

ଇତି
ଆପଣଙ୍କର ଅଷ୍ଟଚର,
ଅରୁଣା ।

ବାବୁଙ୍କର ପତ୍ରଟକୁ ପ୍ରତ୍ୟାଖ୍ୟାନ କରିଛି ଅରୁଣା ।

ଆଉ ହଲିଉଡ୍‌ର ଆତିଥ୍ୟ ପାଇଁ ପଠାଇଛି ନିମନ୍ତ୍ରଣ । ବାବୁଙ୍କର ଅନ୍ତର ଆତ୍ମାରେ ଆରମ୍ଭ ହେଲା ହା, ହା କାର ଏକ କରୁଣ ବେଦନା । ଅରୁଣା ଏତେ ଅସାମାଜିକ ହୋଇ ଉଠିବ ବୋଲି ବାବୁ କଳ୍ପନା କରିପାରି ନଥିଲେ । ନିଜର ପ୍ରତିଷ୍ଠା ଉପରେ ଶଳ ପିଣ୍ଡ ଲେପିଦେଇ ଝୁଲିପିବ ।—ଏ ବିଶ୍ୱାସ ତାଙ୍କର ନଥିଲା ।

ତମସା କୋଳରେ ଅଗ୍ନିର ଆକର୍ଷଣରେ ନିର୍ବୋଧ ପତଙ୍ଗ ଜୀବନ ହଜାଇଲା ପରି ଗୌରାଙ୍ଗୀଙ୍କର ତନୁଶ୍ରୀର ଆକର୍ଷଣରେ ହଜାଇ ଦେଲେ ନିଜର ପ୍ରତିଷ୍ଠା । ତାଙ୍କ ସାନ୍ନିଧ୍ୟରେ ପ୍ରତିଷ୍ଠିତ ମାନବ ହେଲା ବିପଥଗାମୀ । ସ୍ଥିତିଶୀଳ ମାନବ ହେଲା ଅଟ୍ଟହାସ୍ୟର ପାତ୍ର । ବାବୁ ଅନୁଭବ କଲେ ଯେମିତି ଆକାଶଟା ଅଗ୍ନିକଣ ତାଙ୍କ ମୁଣ୍ଡ ଉପରେ ଲଦିହୋଇ ଯାଇଛି । ଅରୁଣାର ମାୟା ଜାଲରେ ଛନ୍ଦିହୋଇ ଭୂତୋନ୍ମାଦ ପରି କମ୍ପି ଉଠୁଛନ୍ତି । ଜମ ବର୍ଦ୍ଧନ ଉତ୍ତାପ ତାଙ୍କୁ ଗ୍ରାସ କରିବାକୁ ଲାଗିଛି ।

ଆରୋଗ୍ୟୋନ୍ମୁଖୀ ଶରୀର ଭିତରେ ପୁଣି ସୃଷ୍ଟି ହେଲେ ହତାଶା ଓ ଅନ୍ଧାର ଜୀବାଣୁ । ସେ ଜୀବାଣୁ ପୁଣି କ୍ଷିପ୍ର ଗତିରେ ବ୍ୟାପ୍ତ ହେଲେ ଆପାଦ-ମସ୍ତକ । ଭୁଟୋନ୍ମାଦ ପରି କମ୍ପି ଉଠିଲା ଶରୀରର ପ୍ରତ୍ୟେକ ଅଂଶ । ହସ୍ତଚ୍ୟୁତ ହେଲା ହଳଦ୍ଦ୍‌ ଆଗତ ଲଫାଫା ଖଣ୍ଡିକ । ରୋଗର ପ୍ରବଳ ଆକ୍ରମଣରେ ବାବୁ ହେଲେ ଆହତ ।

ବୁକର ଝୋଲା ହେଲା ଉପାୟ ଶୂନ୍ୟ । ବାବୁଙ୍କର ରୁଗ୍‌ଣ ଅବସ୍ଥାରେ ଅର୍ଥ ଶୂନ୍ୟ ସୃଷ୍ଟି କଲା ଆତଙ୍କ । ଆତଙ୍କିତ ମନର ବିଚଳିତ ତନ୍ତ୍ରୀ ଗୁଡ଼ିକୁ ନିୟନ୍ତ୍ରିତ ହେଲେ ସାହସର ସଞ୍ଚିତ । ମତି ସ୍ଥୈର୍ଯ୍ୟହେଲା ପ୍ରତିଷ୍ଠା । ଆଉ ପ୍ରେରଣ କଲା ଏକ ସଂକ୍ଷିପ୍ତ ପତ୍ର ।

ବାବୁ,

ମୋର ନମସ୍କାର ଗ୍ରହଣ କରିବେ ।

ବର୍ତ୍ତମାନ ବାବୁଙ୍କ ଅବସ୍ଥା ସଂକଟାପର୍ଣ୍ଣ । ତେଣୁ ଆପଣଙ୍କ ଉପସ୍ଥିତି ନିହାତି ପ୍ରୟୋଜନ । ଅଷ୍ଟତକୁ ଠେଲିଦେଇ ନଆସିଲେ ଗୋଟିଏ ଜୀବନର ଅବସାନ ବ୍ୟତୀତ କିଛି ସମ୍ଭବ ନୁହେଁ ।

ଇତି

ଆପଣଙ୍କର ଅଧମ,

ନଗୀ ।

× × × ×

ବ୍ୟାପକ ଯତ୍ନ, ନିବିଡ଼ ମନ, ଆନ୍ତରିକ ସେବାରେ କର୍ମ ମୁଖରିତ ଆଜି ଏ ପ୍ରାସାଦ । ଆନ୍ତରିକ ଆତ୍ମୀୟତାରେ ପରିବ୍ୟାପ୍ତ

ଏ କୋଠରୀ ଗହ୍ୱର । ଆବର୍ତ୍ତ ହୋଇଛି ଯୁଗ ଯୁଗର ସେହି ମହାନ୍ ମହନୀୟ ପ୍ରେମ । ଆଜି ବଳୁପ୍ତ ହୋଇଛି କୃତ୍ରିମ ଶଠତା । ସୁନ୍ଦରୀ ତନ୍ୱୀର ଉପସ୍ଥିତିରେ ପ୍ରାସାଦ ଉଜ୍ଜ୍ୱଳ ଦିଶିଲେ ମଧ୍ୟ, ଭରି ହୋଇ ରହିଥିଲା ଶ୍ୱାସ ରୁଦ୍ଧ କଲୁଷିତ ଜଟିଳ ବାୟୁ ମଣ୍ଡଳ । ବର୍ତ୍ତମାନ ସେହି କୋଠରୀରେ ବହୁଛି ଅମ୍ଳଜାନ ସ୍ନିଗ୍ଧ ନିର୍ମଳ ଅନିଳ । ସମସ୍ତେ ସଚେତ । ସମସ୍ତେ ଫୁର୍ତ୍ତିବନ୍ତ । ପ୍ରାସାଦ ବର୍ତ୍ତମାନ କର୍ମମୁଖର ।

ବାବୁଙ୍କର ଚଳପ୍ରଚାରେ ହେଲା ନାହିଁ । କେତେବେଳେ ଗରମ ଜଳ, କେତେବେଳେ ସାଗୁ, ଯେତେବେଳେ ଯାହା ଦରକାର ତାହା କରାଯାଉଛି । ଅନେକ ସମୟରେ ବାବୁ ପୁଣି ହୋସ ଫେରି ପାଇଲେ । ଆଖି ଖୋଲି ଚତୁର୍ଦ୍ଦିଗକୁ ଦୃଷ୍ଟି ବୁଲେଇ ଆଣିଲେ । କୋଠରୀଟି ତାଙ୍କୁ ନୂତନତ୍ୱର ସନ୍ଦେଶ ଦେଲା । ଅନୁଭବ କଲେ ସତେ ଯେମିତି ସଜ ପବନ ତାଙ୍କ ଶରୀରରେ ଘଷି ହେଉଛି । ଦୁର୍ଗନ୍ଧ ଦୂର ହୋଇଛି । ପରିଷ୍କାର ହୋଇଛି କୋଠରୀ ଗର୍ଭ । ସୌରଭିତ ହୋଇ ଉଠିଛନ୍ତି କୋଠରୀ ପ୍ରତ୍ୟେକ ବସ୍ତୁ । ଅପରିଷ୍କାର ପୋଷାକ ପର ହୋଇଛନ୍ତି ପରିଛନ୍ନ । ଯାହା ଧନ ଧରି ସେ ଯେଉଁ ଅପରିଚ୍ଛନ୍ନ ତଦରେ ନିଜ ଶରୀରକୁ ଆବୃତ କରି ରଖିଥିଲେ ତାହା ମଧ୍ୟ ହୋଇଛି ପରିଛନ୍ନ ।

ବାବୁ ଅନୁଭବ କଲେ କିଏ ତାଙ୍କ ପାଦ ଉପରେ ହାତ ବୁଲାଇ କ୍ଳାନ୍ତି ଦୂର କରିବା ପାଇଁ ଚେଷ୍ଟା କରୁଛି । କଣ ଏମିତି ସବୁ ପରିବର୍ତ୍ତନ ଘଟି ଯାଉଛି—ବାବୁ ବିସ୍ମିତ ହେଲେ । ନିମ୍ନ ଆଡକୁ ଦୃଷ୍ଟି ବୁଲାଇଁ ଦେଖିଲେ କେତେବେଳେ ଅରୁଣା ଆସି

ତାଙ୍କର ସେବାରେ ବ୍ୟସ୍ତ । ବାବୁ ହଠାତ୍ ଉତ୍ତେଜିତ ହୋଇ ଉଠିଲେ କହିଲେ—ଅରୁଣା ତୁମେ ଏତିକି ପ୍ରତାରିକା ! ଏତିକି ଚରିତ୍ରହୀନା ! ଗୋଟିଏ ପ୍ରହାର କଲେ । ଅରୁଣା ହେଲେ ଭୂପତିତା । ଆଜି ଆରମ୍ଭ ହେଲେ କ୍ଷୀଣ ବିଳାପ । ପୁଣି ଥରେ ସେ ଅରୁଣାକୁ ଗ୍ରହଣ କରିବାକୁ ଚାହୁଁ ନଥିଲେ । ସେ ଅରୁଣାର ମୁଖ ଅବଲୋକନ ନକରିବା ପାଇଁ ସ୍ଥିର କରି ସାରିଛନ୍ତି ।

ଅରୁଣାର ଆଗମନ ବାବୁଙ୍କ ମନରେ ଭରିଦେଲା ଘୃଣା । ଭାବିଲେ—ପୁରୁଷ ନାରୀକୁ କାହିଁକି ଭୁଲିଯାଏ ? ନାରୀ କଣ ପୁରୁଷକୁ ଶାନ୍ତି ଦେଇପାରେ ? ଉପବନର ପୁଷ୍ପଠାରେ ଲଜ୍ଜାଅଛି କିନ୍ତୁ ଅରୁଣାଠାରେ ତାହା ନାହିଁ । ଅଚଳ ପୁଷ୍ପ ଚାହେଁ ନାହିଁ ଅନେକ ଭ୍ରମରର ସ୍ପର୍ଶ, ଚାହେଁ ନାହିଁ ଅନେକ ପ୍ରଜାପତିର ସ୍ପର୍ଶ । ସେ ଲଜ୍ଜାରେ ସଢ଼ିଯାଏ । କାଲିକି ହୁଏ ବାସି ଫୁଲ । ଲଜ୍ଜାରେ ମୌଳିଯାଇ ଝଡ଼ିଯାଏ । କିନ୍ତୁ ଅରୁଣା ମାନବୀ ଅଥଚ ଲଜ୍ଜା ନାହିଁ । ଲଜ୍ଜା ଭୂଷଣ ବୋଲି କହନ୍ତିଏ ନାରୀ-ପ୍ରଶଂସା ମୁଖର । ଚଳମାନ ନାରୀକୁ ରାସ୍ତା ଛାଡ଼ି ଦିଏ ପୁରୁଷ । ସୁନ୍ଦରୀ ଅଥଚ ଲଜ୍ଜା ଭୂଷଣ ନାରୀ ପାଇଁ ଯୁଗେଯୁଗେ ବୀରମାନଙ୍କ ମଧ୍ୟରେ ଚାଲିଛି ପ୍ରତିଦ୍ୱନ୍ଦିତା । କିନ୍ତୁ ସୁନ୍ଦରୀ ବେଶ୍ୟାକୁ ସମସ୍ତ ପ୍ରତିଷ୍ଠିତ ମାନବ କରେ ଘୃଣା । ପ୍ରଗତିଶୀଳ ନାରୀ ନାମରେ ଚରିତ୍ର ସଂହାରକୁ କଣ ଏ ସମାଜ ସ୍ୱୀକାର କରିବ ? ସେଥିପାଇଁ ଆଇନ ଆଜି ଅନେକ ଅସାମାଜିକା ନାରୀକୁ କରୁଛି କାରାରୁଦ୍ଧ । ଗତିବିଧି ସୁନିର୍ଣ୍ଣିତ ଭାବରେ ହେବ ସୀମାବଦ୍ଧ ।

ଅରୁଣା ପୁଣି କିଛି ଫାଇଦା ଉଠାଇବାକୁ ଆସିଛି । ବାବୁ ଡ୍ରାଇଭର ଚୁଡ଼ିଲେ—ନବୀ, ଏ ନବୀ, ଏହି ଅଲକ୍ଷଣୀକୁ ଘରୁ ତଡ଼ିଦେଲୁ ।

ପୁଣି ଥରେ ପଡ଼ୁଆର ଆରମ୍ଭ କରିବାକୁ ଆସିଛି । ନଳିନୀ, ମୁଁ କହୁଛି ତାକୁ ଧରି ଚଡ଼ିଲୁ ।

ନଳିନୀ ଦୌଡ଼ି ଆସିଲା । ଦେଖିଲା ରୋଗ ଶଯ୍ୟାରେ ଥାଇ ବାବୁ ଭୁଚୋନ୍ମାଦ ପରି କମ୍ପୁଛନ୍ତି । ଆଜି ଆଦେଶ ଦେଉଛନ୍ତି ଅରୁଣାକୁ ତଡ଼ିବାକୁ । କିନ୍ତୁ କାହିଁ, ଅରୁଣା ଦିଦି କେଉଁଠି ଅଛନ୍ତି ? ଘରକର ଏ ପ୍ରଶ୍ନରେ ବିସ୍ମିତ ହେଲେ ବାବୁ । ସ୍ଥିର କଲେ ଘରକର ଚୌକାଠ ମଧ୍ୟ ଉପହାସ୍ୟ କରୁଛି । କ୍ରୋଧ ଜର୍ଜରିତ କଣ୍ଠରେ ବାବୁ କହିଲେ ରେ ବୁଢୁ, ତୋତେ ଦେଖାଯାଉ ନାହିଁ ? ସେଇଠି ବସ ଛଳନାରେ ବିଳାପ କରୁଛି ।

ନଳିନୀର ଆଖି ସଜଳ ହୋଇ ଉଠିଲା । କହିଲା ବାବୁ ସେ ଅରୁଣା ଦିଦି ନୁହଁନ୍ତି । ସେ ହେଉଛନ୍ତି ଆପଣଙ୍କର ବିତାଡ଼ିତ କାଳୀକନ୍ୟା ପୁଷ୍ପା ଦିଦି ।

ନଳିନୀର କଥାଶୁଣି ବାବୁ ଆଶ୍ଚର୍ଯ୍ୟ ହେଲେ । ନମ୍ରକୁ ଦୃଷ୍ଟିପାତ କରି ସମ୍ବୋଧନ କଲେ-ପୁଷ୍ପା ।

ଦୀର୍ଘ ଦିନ ପରେ ନିଜର ସ୍ୱାମୀଙ୍କ ଠାରୁ 'ପୁଷ୍ପା' ବୋଲି ସମ୍ବୋଧନ ପାଇ ଭୁଲିଗଲେ ଯୋଡ଼ା ଅଞ୍ଜଳିକୁ । ମଥା ଉତ୍ତୋଳନ କରି ଚାହିଁଲେ ବାବୁଙ୍କୁ ।

ଅଶ୍ରୁଜଳର ସ୍ନିଗ୍ଧ ଓ ଅବହେଳିତ ପୁଷ୍ପା ଆଡ଼କୁ ବାବୁଙ୍କର ସ୍ୱାଗତିକା ଚକ୍ଷୁ ଯୁଗଳ ଟାଣି ହୋଇଗଲା । ବାବୁ ଦେଖିଲେ ଅବଗୁଣ୍ଠନ ଭିତରେ ପୁଷ୍ପାର ଲଲାଟରେ ଦାଉ ଦାଉ ହୋଇ ଜଳୁଛି ସିନ୍ଦୁର ଟୋପା । ସରଳା ପୁଷ୍ପା ଅବହେଳିତା ଅଥଚ

ଲଲାଟରେ ସିନ୍ଦୂର ବିନ୍ଦୁ ତାର ତେଜସ୍ଥାନ୍ । ପୁଷ୍ପାର ସିନ୍ଦୂର ବିନ୍ଦୁ ବାବୁଙ୍କ ମାନସ ପଟରେ ଫୋଟାଇଲା ଭାରତୀୟ ଦର୍ଶନ ଓ ପରମ୍ପରାର ମହତ୍ତ୍ୱ ।

ଧୈର୍ଯ୍ୟର ସତ୍ତ୍ୱ ପୁଷ୍ପା ବାବୁଙ୍କର ସ୍ୱାଗତିକା ଆଖି ସହିତ ଆଖି ମିଶାଇ ପାରିଲା ନାହିଁ । ଦୁଃଖ ଓ ଲାଜରେ ମୁହଁକୁ ଫେରାଇ ନେଲା । ତଥାପି ବାବୁ ଆଉ ପାରିଲେ ନାହିଁ । ଧୈର୍ଯ୍ୟ ବନ୍ଧନର ଶକ୍ତିହୀନ ଶରୀରକୁ କେଉଁଆଡୁ ଶକ୍ତି ଆସି ଠୁଳ ହେଲା । ଆଉ ସେହି କାଳୀକନ୍ୟାକୁ କୋଳକୁ ଟାଣି ନେଇ ସମାପ୍ତ କଲେ ଏକ ଦୁଃଖ ଓ ନୈରାଶ୍ୟର ଝଡ ।

## ତାଡ଼ନା

ଦ୍ୱିତୀୟ ବିଶ୍ୱଯୁଦ୍ଧର ଏକ ଶୀତଳ ରାତ୍ରି ।

ଶୀତଳ ସମୀର ସ୍ପର୍ଶରେ ଶରୀର କମ୍ପି ଉଠୁଥାଏ । ବଙ୍ଗଳାର ସେ ପାଖେ କୁକୁର ଛୁଆଗୁଡ଼ିକ ଗଧିଆର ଭୟରେ ରଡ଼ି ଛାଡ଼ୁଥାନ୍ତି । ଚନ୍ଦ୍ରଶୂନ୍ୟ ଆକାଶମାର୍ଗରେ ଯୁଦ୍ଧ ବିମାନ ଗୁଡ଼ିକ ଭୀଷଣ ଗର୍ଜନରେ ପ୍ରାଣୀମନରେ ଆତଙ୍କ ସୃଷ୍ଟି କରି ଉଡ଼ୁଥାନ୍ତି । ହୁଏତ କେଉଁଠି ବୋମା ଗୁଡ଼ିକ ଅଜାଡ଼ି ହୋଇ ପଡ଼ିବ । ଆହତ ହେବେ ନିରୀହ ନରନାରୀ । ସ୍ତନପାନ ରତ ଶିଶୁ ମାତାର କୋଳରେ ପାଇବ ସମାଧି । ଧ୍ୱଂସହେବ ବୈଭବଶାଳୀ ସହରର ଯୁଗଯୁଗର ଐଶ୍ୱର୍ଯ୍ୟ । ଶାଳପ୍ରାଂଶୁ ହର୍ମ୍ୟମାଳାର ଗରିମା ହେବ ଲୁପ୍ତ । ସୃଷ୍ଟି ହେବ ଭସ୍ମର ଅସଂଖ୍ୟ ସ୍ତୂପ ।

ବିମାନ ଗର୍ଜନରେ ହଠାତ୍ ମୋର ନିଦଟା ଭାଙ୍ଗିଗଲା । ଦେହରୁ କମ୍ବଳଟା ଅଳ୍ପ ଅଲଗା ହୋଇଗଲେ ଶୀତ ସ୍ରୋତ ଭିତରେ

ଘଣିଯାଇ ସୃଷ୍ଟି କରୁଥିଲା କମ୍ପନ । ଠିକ୍ ସେଇଯକୁ କାମୁଡ଼ି ଦେଇ ଶୋଇବାକୁ ଇଚ୍ଛା ହେଉଥିଲା । କିନ୍ତୁ କର୍ଫ ଫ୍ଲାସ୍କଟାକୁ ଦେଖିବାରୁ ଆଜି ଶୋଇବାକୁ ମନ ବଳିଲା ନାହିଁ । ମୁଣ୍ଡରେ ମାଫଲରଟାକୁ ଗୁଡ଼ାଇଦେଇ ଦେହରେ ନେଉଗମୀ କମ୍ବଳଟାକୁ ସଜାଇଦେଇ ଖଟିଆରୁ ବାରଣ୍ଡାକୁ ଓହ୍ଲାଇ ଆସିଲି । ସେତେ-ବେଳେ କ୍ୟାପ୍‌ଷ୍ଟେନ୍ ସିଗାରେଟ୍ ଲାଗିଥାଏ । ଶୀତରେ ଦେହ କମ୍ପି ଉଠିଲା ବେଳକୁ ବେଶ ଧୂଆଁ ଧୂଆଁ ଭକ୍ ଭକ୍ କରି ଛାଡ଼ିଦେବା ପରେ ପରେ, ତା ସାଙ୍ଗକୁ କଫିଢ଼ୋକେ ଚଢ଼ାଇଦେଇ ଥାଏ । ଆଉ ବିମାନ ଗୁଡ଼ିକର ଗତି ବିଧିକୁ ଲକ୍ଷ୍ୟ ରଖିଥାଏ ।

ପବିତ୍ର କାର୍ତ୍ତିକ ସ୍ନାନସାରି ଗାଁର ସ୍ତ୍ରୀ ଲୋକମାନେ ବିଅଁକୁ ପୂଜାକରି ହାତରେ ପ୍ରସାଦ ଥାଳୀ ଧରି ଫେରୁଥାନ୍ତି । ହଠାତ୍ ମୋର ନଜର ଜଣେ ସ୍ତ୍ରୀ ଉପରେ ପଡ଼ିଲା । ତା'ର ଗୁଲି, କଥା ବାର୍ତ୍ତାରୁ ମୁଁ ତାକୁ ଦୃଷ୍ଟିର ଶେଷ ସୀମାଯାଏଁ ଚାହିଁ ରହିଥିଲି । ମନେ ହେଲା ସତେ ଯେମିତି ତାହା ସହିତ ମୋର ପରିଚୟ ଅଛି । ସେହି ନାରୀ ଅନ୍ତର୍ଦ୍ଧାନ ହେବାପରେ ମୋର ମାନସ ପଟରେ ଆବିର୍ଭାବ ହେଲା ସ୍ୱପ୍ନା । ମୋ ଉପରେ ତା'ର ଘୋର ଅଭିମାନ । ବିବାହ ଉତ୍ସବରେ ଯୋଗଦେଇ ପାରିନଥିଲି ବୋଲି କାନ୍ଦ କାନ୍ଦ ଲମ୍ବା ଚୌଡ଼ା ଚିଠି ଲେଖିଥିଲା । କିନ୍ତୁ କୋଠର କର୍ତ୍ତବ୍ୟ ନିକଟରେ ମୋତେ ବାନ୍ଧି ହୋଇ ରହିବାକୁ ପଡ଼ିଥିଲା ଏବଂ ତା'ର ପତ୍ର ମୋର ହସ୍ତଗତ ହେଲା ବେଳକୁ କେତେ ବର୍ଷ ସମୟ ଲାଗିଯାଇଥିଲା ।

ଦୁଇଟି ଜୀବନକୁ ଗୋଟିଏ ଜୀବନରେ ଗଢ଼ିବାପାଇଁ ଆମେ ସ୍ୱପ୍ନ ଦେଖୁଥିଲୁ । କିନ୍ତୁ ଜାତି ଭେଦ ପ୍ରାଚୀର ସଦୃଶ ଆମ

ଆଗରେ ମୃଣ୍ଡ ଟେକି ଉଠିଲା । ତଥାପି ସ୍ନେହକୁ ପୋଛି ହେଉ ନାହିଁ । ପିତା, ମାତା, ବନ୍ଧୁବାନ୍ଧବ, ଗୁରୁଜନ ଓ ସମାଜକୁ ଏଡ଼ି-ଦେଇ ଦୁହେଁ ଦାମ୍ପତ୍ୟ ଜୀବନ ଲାଭ କରିବାକୁ ମୋର ମୋଟେ ଆଶା ନଥିଲା । ସ୍ୱପ୍ନାର ପିତା ମାତା ଧର୍ମଘରେ ତାକୁ ବିବାହ କରିବା ପାଇଁ ପ୍ରସ୍ତାବ ଦେବା କଥା ମୋ ଆଗରେ ବାଢ଼ି ବସିଥିଲେ । ଅବଶ୍ୟ ତତ୍ପରେ ଦୁଇଧାର ଲୁହକୁ ଲୁଚାଇ ରଖିପାରୁ ନଥିଲା । ସେତେବେଳେ ମୁଁ ତା ନୀଳ ପ୍ରତିଶ୍ରୁତି ଦେଇଥିଲି ସ୍ୱପ୍ନା । ସ୍ନେହର ମୂଲ୍ୟ ତୋତେ ଅବୋଧ ନୁହେଁ । ତୋତେ ନ ପାଇ ମୁଁ ଦୁଃଖ ଅନୁଭବ କରିବ ଏକଥା କଦାପି ସତ୍ୟନୁହେଁ । ତୋର ଦାମ୍ପତ୍ୟ ଜୀବନ ଯେଉଁଠି ଗଢ଼ି ଉଠୁନା କାହିଁକି, ମୋର ସ୍ନେହ ତୋ ପ୍ରତି ଅବିଚ୍ଛେଦ୍ୟ । ତୋର ଜୀବନ ଯେତେ ସରସ, ସୁନ୍ଦର ହୋଇପାରେ, ମୁଁ ସେତିକି ଖୁସି ହେବ । ତୋର ମଥାର ସିନ୍ଦୁର ଆଉ ଗଳାର ହାର ଯେତେ ଦେଦୀପ୍ୟମାନ ଓ ସୌନ୍ଦର୍ଯ୍ୟ ହୋଇ ଉଠିବ, ସେ ସୌନ୍ଦର୍ଯ୍ୟକୁ ମୁଁ ଯେଉଁଠାରେ ଥାଏନା କାହିଁକି ତାହା ଉପଲବ୍‌ଧି କରିବ ।

କ...ନ୍ତୁ, ତୁ ମୋଠାରୁ ସ୍ନେହର ସକଳ ଉଗ୍ନାଂଶକୁ ପ୍ରତ୍ୟାହାର କରିନେ । ନଚେତ୍ ତୋର ଦାମ୍ପତ୍ୟ ଜୀବନରେ ଅଜ୍ଞାତ ଭଙ୍ଗିମାର ମାନସିକ ବେଦନା ସୃଷ୍ଟି କରିବ ।

ସେତେବେଳକୁ ସ୍ୱପ୍ନାର ଧୈର୍ଯ୍ୟ ଚ୍ୟୁତ ହେବାକୁ ଲାଗିଲା ଭଳି ମନେ ହେଉଥିଲା । ମୋର କଥାଗୁଡ଼ିକ ଶୁଣି ଯନ୍ତ୍ରଣା ଅନୁଭବ କଲାଭଳି ଜଣା ପଡ଼ୁଥିଲା । ଲୋତକ ଧାର ତାର ଲମ୍ବାରୁ ଲମ୍ବା ଓ ମୋଟା ହୋଇ ଉଠିଲା । ଚନ୍ଦ୍ରବଦନରେ କଳା ମେଘ ଘେରି ରହିଥିଲା । ତାର ବାକ୍‌ଶକ୍ତି କ୍ଷୀଣ ହୋଇ ଯାଇଥିଲା । ବୁକୁରେ

କୋଳ୍ପ ବଢ଼ିବାରେ ଲାଗି ରହିଥିଲା । ତାର ସକଳ ବାକ୍‌ଚାତୁରୀକୁ ଏକତ୍ରୀତ କରି ମୋତେ ପ୍ରଶ୍ନ କଲା—ଅତୀତରେ ସକଳ ସ୍ନେହକୁ ତୁମେ ପାସୋରି ଦେଇ ପାରିବ ?

ହଠାତ୍ ଅତୀତ ମୋର ମାନସ ପଟରେ ଚିତ୍ର ଅଙ୍କନ କରିବାରେ ଲାଗିଲା । ଶିହ୍ରିତ କଣ୍ଠରେ ଧୈର୍ଯ୍ୟଚ୍ୟୁତ ସ୍ୱପ୍ନା ପ୍ରକାଶ କଲା—ନଈକୂଳର ଧୂଳିଖେଳ, ହଁ । ସେପାରିର ବଣ ଭୋଜି କ'ଣ ଏମନରୁ ଅପସରି ଯିବ ? ଜଙ୍ଗଲର ଗହଳିଆ ଲତା ବୁଦାରୁ ଜଣେ ଅନ୍ୟଜଣକୁ କୌଶଳରେ ଆବିଷ୍କାର କରିବାର ଚେତନା କ'ଣ ଲୋପ ପାଇଯିବ ? କଣ୍ଟକିତ ଗୁଳ୍ମରୁ ମୋର ବସ୍ତ୍ର ଉନ୍ମୋଚନର ଛଇଳ ଛବି କେବେ ଦୁଃଖଭୂତ ହୋଇପାରିବ ? କେଶ ବିନ୍ୟାସ, ଲଲାଟରେ କୁଙ୍କୁମ ଟୋପା ଧାରଣ, ଶରୀରରେ ହଳଦୀ ପ୍ରଲେପନ ଓ ପାଦରେ ଅଳତାର ଗାରକୁ ସମାଲୋଚନା କରି ହସାଇବାରେ ଯେଉଁ ଉତ୍ତେଜନା କ'ଣ ଭୁଲିହେବ ? କୁହ ନାବାଳିକା ସ୍ୱପ୍ନାର ସକଳ କାର୍ଯ୍ୟକଳାପକୁ ଭୁଲି ଯାଇପାରିବ ?

ଏ ପ୍ରଶ୍ନର ଉତ୍ତର ହଠାତ୍ ଦେବାର ଶକ୍ତି ମୋର ନଥିଲା । ସ୍ଥିର କଲି ଉତ୍ତରଦେବା ବଦଳରେ ନୀରବ ରହିବା ଉଚିତ ହେବ ।

ସ୍ୱପ୍ନା ଆଜ ନାବାଳିକା ନୁହେଁ । ବର୍ତ୍ତମାନ ତା ଠାରେ ଆବିର୍ଭାବ ହୋଇଛି ତାରୁଣ୍ୟ । ସମସ୍ତ ଥିଲା ନାବାଳିକା ସ୍ୱପ୍ନା ସହିତ ଅବାଧ ମିଳନକୁ କେହି ଗୁରୁତ୍ୱ ଦେଉନଥିଲା । କିନ୍ତୁ ସ୍ୱପ୍ନା ସହିତ ବର୍ତ୍ତମାନ ବାର୍ତ୍ତାଳାପ କରି ଅଯଥା ସନ୍ଦେହ ସୃଷ୍ଟି କରିବା ଉଚିତ ନୁହେଁ । ସେ ତରୁଣୀ । ସେ କୌଣସି

ପରସ୍ଥିତକୁ ମୁକାବିଲା କରିପାରିବ । କିନ୍ତୁ ସ୍ୱପ୍ନା ଅବଳା । ସନ୍ଦେହର କଳଙ୍କ ଥରେ ସ୍ପର୍ଶ କଲେ ତାର ଜୀବନ ମାଟି ହୋଇ ଯିବ । ଭଲ ପାଇବାର ଜନ୍ମ ଆଗରେ ଭଙ୍ଗା ପଡ଼ିଯିବ । କିନ୍ତୁ ସମସ୍ତ ଜୀବନ ରହିବା ପରେ ମୁଁ ପ୍ରକାଶ କଲି— ମୁଁ ପାରିବ ସ୍ୱପ୍ନା, ମୁଁ ପାରିବ ।

ତୁମେ ଭବିଷ୍ୟତରେ କ'ଣ କରିବ ? ପ୍ରଶ୍ନ କଲା ସ୍ୱପ୍ନା ।

"ମୁଁ ଜଣେ ସୈନିକ ହେବ," ଉତ୍ତର ମୋତେ ଦେବାକୁ ପଡ଼ିଥିଲା ସ୍ୱପ୍ନାକୁ ।

—କାହିଁକି ? କ'ଣ ଅନ୍ୟ କିଛି ପନ୍ଥା ନାହିଁ ।

—ଅନ୍ନ ସଂସ୍ଥାପନା ପାଇଁ ଏଇ ଏକମାତ୍ର ଉପାୟ । ବହୁ ଚେଷ୍ଟା କଲି । ମାଟ୍ରିକ ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଲି ନାହିଁ । ଅନେକ ଦ୍ୱାରକୁ ପାଇଁ ହାତ ବଢ଼ାଇ ଶେଷରେ ନିରାଶ ହେବାକୁ ପଡ଼ିଲା । ଶେଷରେ ନିଷ୍ପତ୍ତି ନେଲି ସୈନିକ ହେବ । ଅନ୍ନ ସଂସ୍ଥାପନାର ଆତଙ୍କ ହେବ ଦୂର । ମୁଁ ରହିବ ଚିର କୁମାର ।

ଚିରକୁମାର ଶବ୍ଦ ସ୍ୱପ୍ନାର ଅନ୍ତର ଆତ୍ମାରେ ସୃଷ୍ଟି କଲା ଏକ ଅବ୍ୟକ୍ତ ବେଦନା । ପ୍ରଶ୍ନ କଲା ଏଭଳି କଠୋର ନିଷ୍ପତ୍ତି କାହିଁକି ନେବ ? ଉତ୍ତର ଦେବାକୁ ଯାଇ ମୁଁ ପ୍ରକାଶ କଲି— ମୁଁ ଦୁଃସାହସିକ ଜୀବନ ଯାପନ କରିବ । ତାହା ପୁଣି ପରାଧୀନ ଭାରତ ସରକାରଙ୍କର କଠୋର କଟକଣା ଭିତରେ ଏ ଜୀବନ କଟିବ । ଆଜି ଭାରତର ପୂର୍ବରେ ତ, କାଲି ପଶ୍ଚିମରେ, ପୁଣି କେବେ

ବର୍ମାରେ ତ, କେବେ ଇଣ୍ଡୋନ-ଏସିଆରେ । କେବେ ଆଫ୍ରିକାର ଘନ ଅରଣ୍ୟରେ ତ କେବେ ୟୁରୋପର ବିସ୍ତୀର୍ଣ୍ଣ ସମତଳ ଭୂମିରେ କେବେ ଜଳରେ ତ କେବେ ସ୍ଥଳରେ ନଚୁବା ଆକାଶରେ । ସେଠାରେ ପରିବାରର ମମତା କାହିଁ ? ପ୍ରାଣଧରି ବଞ୍ଚିବାର ସ୍ୱପ୍ନ କାହିଁ ? ଭାରତ କ'ଣ ନିକଟରେ ସ୍ୱାଧୀନ ହେବ । ସ୍ୱାଧୀନ ଭାରତର ସୈନିକ ହୋଇ ଗୌରବ ଅର୍ଜନ କରିବ । ଏ ଭାଗ୍ୟରେ ଘଟିବନି ସ୍ୱପ୍ନା, ଏ ପରାଧୀନ ଭାରତର ରକ୍ତ ପିପାସୁ ସରକାରର । ଏଠାରେ ନିଜର ଦାମ୍ପତ୍ୟ ଜୀବନ ସ୍ୱପ୍ନ । ତେଣୁ ଚିର କୌମାର୍ଯ୍ୟ ହେବ ମୋର ବ୍ରତ ।

ସ୍ୱପ୍ନା ଭାଙ୍ଗି ପଡ଼ିଲା । ପ୍ରଶ୍ନ କଲା—ତେବେ ଅକ୍ଷତର ଖେଳଘର ଇମିତି ମୂଲ୍ୟହୀନ ଭାବରେ ଉଡ଼ିଯିବ ?

ସ୍ୱପ୍ନା ତୁ ଆଜି ନାବାଳିକା ନୋହୁ । ତୋଠାରୁ ଚପଳତାକୁ ସାଗର ଗର୍ଭରେ ଫିଙ୍ଗି ଦେବାକୁ ହେବ । ନୋହିଲେ ସମାଜରେ ପାଦପକାଇ ଚଳପ୍ରଚଳ ହେବାକୁ ଅସମର୍ଥ ହେବୁ । ଦେଖୁଛୁ ସମାଜ ଆମ୍ଭଙ୍କୁ ସମର୍ଥ କରୁନାହିଁ । ପୁଣି ତୋର ପିତା ମୋର ଜଣେ ଶୁଭକାଂକ୍ଷୀ । ତାଙ୍କ ମନରେ ଆଘାତ ଦେବାପରି ଶକ୍ତି ମୋଠାରେ ନାହିଁ । ତୋର କଲ୍ୟାଣମୟୀ ଜନନୀକୁ ମୁଁ ସମ୍ମାନ ପ୍ରଦର୍ଶନ କରେ । ତାଙ୍କର ବିବେକ ବିରୁଦ୍ଧରେ ମୋର ମତ ଉତ୍ତୋଳନ କରିବାକୁ ମୁଁ ଠିକ୍ ମନେ କରେନା । ତା ଛଡ଼ା ପରାଧୀନ ଭାରତ ସରକାରଙ୍କର ଦ୍ୱାରା ମୁଁ ସୈନିକ ଭାବେ ମନୋନୀତ ହୋଇସାରିଛି । ଆଜି ମନା କଲେ ମଧ୍ୟ ଏ ନିଷ୍ଠୁର ସରକାର ମୋତେ ଛାଡ଼ିବେ ନାହିଁ । ତେଣୁ ମୋର କର୍ତ୍ତବ୍ୟ

ପଥକୁ ମୁଁ ଭୁଲିଯିବ ସ୍ୱପ୍ନା । ଆଉ ତୁ ମୋଠାରେ ଜମେଇଥିବା ସ୍ନେହଟକ ପ୍ରତ୍ୟାହାର କରନେ ।

ସ୍ୱପ୍ନା ଝରଝର ନୟନରେ କେବଳ ମୋତେ ଅବଲୋକ କରିବାରେ ଲାଗିଲା । ମୁଁ ତାକୁ ବହୁବାର ଆଶ୍ୱାସନା ଦେବାପରେ ସେ ଆଶ୍ୱସ୍ତି ଲାଭ କରିଥିଲା । ତାର କୋମଳ, କ୍ଷୀଣ କଣ୍ଠରେ ଥର ଥର ହୋଇ ତାର ବିବାହ ଉତ୍ସବରେ ଯୋଗ ଦେବାପାଇଁ ବହୁବାର ଅନୁରୋଧ କରିଥିଲା । କିନ୍ତୁ ମୁଁ.........

× × × ×

ଦିନ ଦୁଇଟାପରେ ବ୍ରହ୍ମପୁରରୁ ଭୋପାଳ ଉଦ୍ଦେଶ୍ୟରେ ଅଗ୍ରସର ହେବାକୁ ପଡ଼ିଲା । ଚଳନ୍ତା ଟ୍ରେନ୍‌ଟିଏ ଜନ୍ମମାଟିର ସକଳ ଆକର୍ଷଣକୁ ଛିନ୍ନକରି ମୋତେ ଦୋହଲିବାରେ ଲାଗିଲା । ଟ୍ରେନ୍ ବଗି ଭିତରେ ସିଗାରେଟ ଧୂଆଁ ଧୂଆଁ ଟାଣି ମୋର ଜନ୍ମମାଟିର ଆକର୍ଷଣକୁ ଭୁଲିବା ପାଇଁ ଯତ୍ନବାନ ହେଲି । କ୍ରମେ କ୍ରମେ ପରିଚିତ ମୁହଁ ଆଉ ଦୃଷ୍ଟି ଗୋଚର ହେଲାନାହିଁ । ମାତୃଭାଷା ମଧ୍ୟ କର୍ଣ୍ଣ ଗହ୍ୱରରେ ମୁଖରିତ ହେଲାନାହିଁ । ଜନ୍ମମାଟିଠାରୁ ମୁଁ ଯେତେ ଦୂରେଇ ଦୂରେଇ ଯାଉଥାଏ, ତା ପ୍ରତି ଆକର୍ଷଣ ସେତେ ପ୍ରବଳ ହୋଇ ଉଠୁଥାଏ । କେତେବେଳେ ପ୍ରଭାତ, କେତେବେଳେ ମଧ୍ୟାହ୍ନ କେତେବେଳେ ନିର୍ମଳ ସନ୍ଧ୍ୟା ଆଉ କେତେବେଳେ ଘନ ଅନ୍ଧକାର ମୋ ମନରେ ଜନ୍ମମାଟିର ଭିନ୍ନ ଭିନ୍ନ ମମତାମୟୀ ଚିତ୍ର ଅଙ୍କନ କରିଗଲେ । ପ୍ରଭାତ ସମୟ ଉପସ୍ଥିତ ହେଲେ ଏ ମନ ଖୋଜିବୁଲେ ସେହି ସବୁ ଶକ୍ତିବାନ ପତିତପାବନଙ୍କର ନୀଳଚକ୍ର ଓ ତା ଉପରେ ଉଡ୍ଡୀୟମାନ ପତାକା

ଦର୍ଶନ ପାଇଁ । କିନ୍ତୁ ମନ୍ଦିର ପରିବର୍ତ୍ତେ ଦୃଷ୍ଟିଗୋଚର ହୁଏ ମସଜିଦ୍ କିମ୍ବା ଗିର୍ଜା । ନୈରାଶ୍ୟରେ ଏକ ପାର୍ଶ୍ୱରୁ ମୁହଁ ଫେରାଇ ଅନ୍ୟ ପାର୍ଶ୍ୱକୁ ମାଉବଟର ଘୁଞ୍ଚି ଉଠେ ।

ପ୍ରଦୋଷର ଉପସ୍ଥିତି ମୋ ମନରେ ତୋଳେ ଛବିଳ ଅଶାନ୍ତ । ଏମିତି କେତେ ସୁନେଲି ପ୍ରଦୋଷରେ ମୁଁ ଚୋରିଛି ଜାମକୋଳି, କିମ୍ବା ବରକୋଳି ନଚୁବା ପିଜୁଳି । ସେତେବେଳେ ସ୍ୱପ୍ନା ହୋଇଛି ମୋର ଅନୁଗାମୀ । ଏକତ୍ରିତ କରିଛି ବହୁରଙ୍ଗ ପକ୍ୱ ଫଳ । କୋଳ ଟୋକାଇ ଗୋଟାଇ ତା ଆଡକୁ ଲକ୍ଷ୍ୟକରି ଫିଙ୍ଗିଛି କେତେ ଫଳ । ସେ ଆଘାତ ପାଇଛି । ତଥାପି ଆପତ୍ତି ପ୍ରକାଶ କରିବା ପରିବର୍ତ୍ତେ ଶୁଣିଛି କେତେକ ହସିଲା ଭଳି ଢଙ୍ଗର ଆବୃତ୍ତି । ହସି ହସି ମୁଁ ବେଦମ ହୋଇ ଯାଇଛି । ଆଜି ତାର ମୁହଁରେ ହସ ଫୁଟାଇବା ଲାଗି କେତେକ କୋଳି ଜବରଦସ୍ତିରେ ତାର ମୁହଁରେ ଗୁଞ୍ଜି ଦେଇଛି । ସେଇଠୁ ସ୍ୱପ୍ନା ଖଣ୍ଡିବନରେ କ୍ଷୁଦ୍ର କ୍ଷୁଦ୍ର ଗୁଳ୍ମକୁ ଅତିକ୍ରମ କରି ହୋଇଛି ଧାବମାନ । ଅନେକ ଥର ତାର ବସ୍ତ୍ରକୁ ମୁଁ କଣ୍ଟକିତ ଗୁଳ୍ମକୁ ଉନ୍ମୋଚନ କରିଛି । ମୋର ଧାବମାନ ପାଦରେ କେତେଥର ଜଙ୍ଗଲର କଣ୍ଟା ଭେଦୀ ଯାଇ ଯନ୍ତ୍ରଣା ଜାତ କରିଛି । କିନ୍ତୁ ସ୍ୱପ୍ନା ସୂଚ୍ୟଗ୍ରରେ ଆବିଷ୍କାର କରିଛି ଆତ୍ମଗୋପନକାରୀ କଣ୍ଟକର ଭଗ୍ନାଂଶକୁ ।

ଗାଁ । ସେପାରି ବଣ ଭୋଜିରେ ନାୟିକା ସାଜି ସ୍ୱପ୍ନା ପ୍ରସ୍ତୁତ କରିଛି ଖାଦ୍ୟ ସାମଗ୍ରୀ । ଅଲଣା, ଲୁଣିଆ କେହି ସମାଲୋଚନା ନକଲେ ମଧ୍ୟ ମୁଁ ସମାଲୋଚନା କରି ସମସ୍ତଙ୍କୁ ହସାଇଛି । ସମାଲୋଚନାରୁ ରକ୍ଷା ପାଇବା ପାଇଁ ମୋତେ ଗୁରୁ ଭୋଜନରେ ତୃପ୍ତି କରିବାକୁ ସ୍ୱପ୍ନା ଯଥେଷ୍ଟ ଚେଷ୍ଟା କରିଛି ।

ଜଙ୍ଗଲରୁ ଫୁଲ ତୋଳି ଆଣି ଆମେ ସ୍ୱପ୍ନାକୁ ରାଜକୁମାରୀ ରୂପରେ ସଜାଉଛୁ । ସମସ୍ତେ ମୋତେ ରାଜକୁମାର ଭୂମିକାରେ ଅବତୀର୍ଣ୍ଣ ହେବାକୁ ଅନୁରୋଧ କରୁଛନ୍ତି । ରାଜକୁମାର ବେଶରେ ଜଙ୍ଗଲ ଭିତରେ ଘୂରି ଘୂରି ଅନ୍ୟ ଦେଶର ରାଜାଙ୍କୁ ପରାସ୍ତ କରି ପାଉଛୁ ରାଜକୁମାରୀକୁ । ହର୍ଷଧ୍ୱନି ଭିତରେ ଆମ ଦୁହିଁଙ୍କର ପୁଷ୍ପମାଳ ବିନିମୟରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଉଛୁ ।

ଇମିତ ଅତୀତ ବିତି ଯାଉଛି । ସ୍ୱପ୍ନା କାଳକ୍ରମେ ହୋଇଛି ଯୁବତୀ ତଥାପି ସ୍ୱପ୍ନା ମୋଠାରୁ ଦୂରେଇ ଯାଇନାହିଁ । ପୂର୍ବପରି ସ୍ନେହ ବନ୍ଧନରେ ବାନ୍ଧି ହୋଇ ରହିଛି । ମୋ ଠାରୁ ଟିକି ଟିକି ନୟନରେ ବିଦାୟ ନେଇଛି ।

× × × ×

ବର ପକ୍ଷରୁ କନ୍ୟା ମନୋନୟନ ଶେଷ ହୋଉଛି । କିନ୍ତୁ ପୃଥୁଳ ଯୌତୁକ ଦାବୀ ପ୍ରସ୍ତାବ ଭାଙ୍ଗି ଯାଉଛି । ଗୋଟିଏ ପରେ ଗୋଟିଏ ଏମିତି ପ୍ରସ୍ତାବ ଯୌତୁକ ଲାଗି ନାକଚ ହୋଇ ଯାଉଛି । ସ୍ୱଜାତି ପ୍ରତି ସ୍ୱପ୍ନାର ପିତା ମାତାଙ୍କ ମନୋଭାବ ପରିବର୍ତ୍ତିତ ହୋଇଗଲାଣି । କନ୍ୟାପାଇଁ ଉପଯୁକ୍ତ ବରପାତ୍ର ମିଳୁ ନାହାନ୍ତି । ବହୁତ ଅନ୍ୱେଷଣ ଚାଲିଲା । ଶେଷରେ କୌଣସିମତେ ଗାନ୍ଧର୍ବ ପରିବାରରେ ସ୍ୱପ୍ନା ବିବାହ କଲା ।

ଦୀର୍ଘ ଦିନ ହେଲା ସ୍ୱାମୀ ସ୍ୱପ୍ନାକୁ ଛାଡ଼ି ରଣ ପ୍ରାଙ୍ଗଣକୁ ଚାଲି ଯାଇଛନ୍ତି । ଆଜି ହଠାତ୍ ପତ୍ର ସ୍ୱାମୀଙ୍କଠାରୁ ପାଇ ସ୍ୱପ୍ନା ପଢ଼ୁଛି ।

ସ୍ୱପ୍ନା,

ଏ ଅପନ୍ତପ ଭୂଇଁରୁ ତୋର ସ୍ୱାମୀଙ୍କର ଶୁଭେଚ୍ଛା ଗ୍ରହଣ କରିବୁ । ପରମ କାରୁଣିକଙ୍କର ଅପାର କରୁଣାରୁ ମୁଁ ଏଠାରେ ଖୁବ୍ ସୁସ୍ଥ ଅଛି । ଆଶାକରେ ତୁମେ ମଧ୍ୟ ସେହି ପରମ କାରୁଣିକଙ୍କର ଆଶୀର୍ବାଦରୁ ସୁସ୍ଥରେ ଥିବ ।

ବର୍ଷ ବର୍ଷ ଧରି ଯୁଦ୍ଧ ଚାଲୁ ରହିବାରୁ ଗ୍ରାମକୁ ଫେରିବା ପାଇଁ ଛୁଟି ମିଳୁ ନାହିଁ । ମନ ମଧ୍ୟରେ ନୈରାଶ୍ୟ ସୃଷ୍ଟି ହେଉଛି । ପ୍ରିୟତମାକୁ ବହୁ ଦୂରରେ ରଖି ଏ ଜଙ୍ଗଲ ଭୂଇଁରେ କାଳାତିପାତ କରିବାକୁ ପଡ଼ୁଛି । ମୋର ଅଫିସରଙ୍କୁ ବହୁତ ଖୋସାମତି କରି ଖୁସି କରାଇଛି । ଆସନ୍ତା ମାସରେ ମୁଁ ଗ୍ରାମକୁ ଯିବି ।

ଏଠାରେ ଅଫିସରମାନେ ମୋର କାର୍ଯ୍ୟରେ ମୁଗ୍ଧ ହୋଇ ମୋର ପଦୋନ୍ନତିର ବାଟ ପରିଷ୍କାର କରି ଦେଇଛନ୍ତି । ମୁଁ ସାଧାରଣ ସୈନିକରୁ ହଠାତ୍ ଅଫିସର ପଦକୁ ଉତ୍ତୀର୍ଣ୍ଣ ହୋଇଛି । ତେବେ ପ୍ରାଣଧରି ଏଠାରୁ ନ ଫେରିବା ଯାଏଁ ଏ ପଦବୀର କୌଣସି ମୂଲ୍ୟ ନାହିଁ । ପ୍ରତିଦିନ ଅଫିସର ଧ୍ୱଂସ ହେଉଛନ୍ତି ଏବଂ ଅନେକ ସୈନିକ ସେ ପଦବୀରେ ଭୂଷିତ ହେଉଛନ୍ତି । ତେବେ ଆଶା କରେ ମୁଁ ଗ୍ରାମକୁ ମଙ୍ଗଳରେ ଫେରିବା ପାଇଁ ଗ୍ରାମ ଦେବୀଙ୍କ ନିକଟରେ ପ୍ରାର୍ଥନା କରିବ ।

ହେଇ ବନ୍ଧୁକର ଆବାଜ ଶୁଣା ଗଲାଣି । ଲେଖା ବନ୍ଦକଲି । ସାକ୍ଷାତରେ ବାକି.........

ଇତି
ତୁମର ସ୍ୱାମୀ

× × × ×

ଆଜି ଅଜୟ ବାବୁଙ୍କ ଘରେ ଭୋଜି ଖାଇବାକୁ ହେବ । ବେଶ ଗୋଟାଏ ଫର୍ଣ୍ଣିସ୍ଡ୍, କୋଠାରେ ନିଜକୁ ସଭ୍ୟ ସମାଜର ସଭ୍ୟରୂପେ ସଜାଇ ନେଇଥିଲି । ଅଜୟବାବୁ ତେଣୁ ମୋ ଅପେକ୍ଷାରେ ଥାନ୍ତି । ହଠାତ୍ ମୁଁ ତାଙ୍କର ବଙ୍ଗଳା ଆଗରେ ପହଞ୍ଚି ଗଲି । ଆଧୁନିକ ଯୁଗର କଳା ରୁଚି ଅନୁସାରେ ସେ ମୋତେ ପାଛୋଟି ନେଇ ତାଙ୍କର ବୈଠକ ଘରର ସୁନ୍ଦର ସ୍ପଞ୍ଜ ଗଦିରେ ବସାଇ ଦେଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ସଙ୍କଟମୟ ଗତିବିଧି ବିଷୟରେ ଅଜୟବାବୁ ଅଳ୍ପ ବହୁତ କିଛି ଜାଣିବାକୁ ଚାହୁଁଥିଲେ । ଜର୍ମାନୀର ଅତର୍କିତ ଆକ୍ରମଣରେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଉଥାନ୍ତି । ପ୍ରକୃତରେ ବିଜୟଶ୍ରୀ କାହା ହେବ କିଛି ଜଣା ପଡୁନଥାଏ । ହଠାତ୍ ଅଜୟ ବାବୁ ସୁଭାଷଚନ୍ଦ୍ର ବୋଷଙ୍କ ବିଷୟରେ ମୋତେ ବହୁତ ପ୍ରଶ୍ନ କଲେ । ଯୁଦ୍ଧ କଥାବାର୍ତ୍ତା ଚାଲିଥିଲା ବେଳେ ବାଟରେ ଯିବା ଲୋକ ଅଟକି ଶୁଣୁଥିଲେ । କଥା ପ୍ରସଙ୍ଗରେ ମୁଁ କହୁ କହୁ କହିଥିଲି— "ଦିଲ୍ଲୀ ଚଲୋ" ଧ୍ୱନିରେ ପୂର୍ବ ଭାରତୀୟ ପାହାଡ଼ିଆ ଅଞ୍ଚଳ ପ୍ରକମ୍ପିତ ହୋଇ ଉଠୁଥାଏ । ଆମର ଆଜାଦ୍-ହିନ୍ଦ-ଫୌଜ ବେଶ ଉତ୍ତପ୍ତ ହୋଇ ଉଠୁଥିଲେ । ସୁଭାଷଚନ୍ଦ୍ର ବୋଷଙ୍କର ସେହି "ଦିଲ୍ଲୀ ଚଲୋ" ଉଦାତ୍ତ ବାଣୀ ଆମ୍ଭମାନଙ୍କର ଉତ୍ତପ୍ତ ରକ୍ତକୁ ଆହୁରି ଉତ୍ତପ୍ତ କରି ଦେଇଥିଲା । ପିତା ମାତା, ସ୍ତ୍ରୀ, ସାଂଗ ସାଥୀଙ୍କୁ ଛାଡ଼ି ଦୁର୍ଗମ ପାହାଡ଼, ନଈ, ନାଳ, ବିଲ ଅତିକ୍ରମ କରି ହଟାଇ ଚାଲିଲୁ ବ୍ରିଟିଶ ଫୌଜକୁ ହଠାତ୍ ଅଚାନକ ଭାବେ ଆମେ ମଣିପୁରର ଦୁର୍ଗ ଅଧିକାର କରିନେଲୁ । ମଣିପୁରର ଦୁର୍ଗର ତୁଂଗ ଶିଖରୀରେ ବ୍ରିଟିସ୍ ପତାକା ପରିବର୍ତ୍ତେ ଭାରତର ଜାତୀୟ ପତାକା ଉଡ଼ାଇ ଥାଉ । ସେ ତ୍ରିରଂଗ ପତାକା ବିଜୟ ଗୌରବରେ ବେଶ

ତେଜ ଖେଳାଇ ଜ୍ୱଳିବାରେ ଲାଗିଥାଏ । ହଠାତ୍ ଜଣେ ଭାରତୀୟ ବ୍ରିଟିସ୍ ଅଧିନସ୍ଥ ମିଲିଟରି ଅଫିସର ସ୍ୱଚ୍ଛାନନ୍ଦ ଏଠାରେ ବାଧା ସୃଷ୍ଟି କଲେ । ମୁଁ ତାଙ୍କୁ ନିର୍ବିଚାରରେ ଗୁଳି କରି ଦେଇଛି ......।

× × × ×

ମୋର କଥା ସମାପ୍ତ ନ ହେଉଣୁ ଜଣେ ବିଧବା ସ୍ତ୍ରୀ ପାଟି କରି ମୋ ଆଡକୁ କୁଦି ଆସି କହିଲା — ଆପଣ ମୋର ସ୍ୱାମୀଂକର ଜୀବନ ଗୁଳି କରି ନେଇଛନ୍ତି, ମୁଁ ଆପଣଂକର ଜୀବନ ଛୁରୀ ମୁନରେ ନେବି । ନିର୍ବୋଧ ବିଧବା ସ୍ୱପ୍ନା ଆଗକୁ ପଛକୁ କିଛି ବିଚାର ନ କରି ମୋତେ ଛୁରୀ ମୁନରେ ଆଘାତ କଲା । ମୁଁ ସ୍ୱପ୍ନାକୁ ଦେଖି ହଠାତ୍ ଚିହ୍ନି ପାରିଲି । ମରଣ-ଯନ୍ତ୍ରଣା-ଦଗ୍ଧ ଥର ଥର କଂଠରେ କହିଲି— ସ୍ୱପ୍ନା ! ମୁଁ ଶେଷକୁ ତୋର ବିଧବା ରୂପ ଦେଖିବାକୁ ଥିଲା । ମୋତେ ତୁ ଖୁନ୍ କରି ବେଶ୍ ଭଲ କରିଛୁ । ପରାଧୀନ ଭାରତ ସରକାର ମୋ ପିଛା ଗୁପ୍ତଚର ଲଗାଇ ଦେଇଛନ୍ତି । ତୁ ଏତ ଟକତେ ଦିନଠାରେ ଦେଶବାସୀର ଫାଶି ଖୁଣ୍ଟିରେ ଝୁଲିଥାନ୍ତି, ଆଜି ତୋହ ହାତରେ ମୋର ପ୍ରାଣ ପ୍ରଦୀପ ନିର୍ବାପିତ ହେବ । ଖୁବ୍ ଭଲ ହେବ । ସ୍ୱପ୍ନା ମୁଁ ଚାଲିଯାଉଛି ।

ସ୍ୱପ୍ନାର ରାଗ ହଠାତ୍ କେଉଁ ଆଡେ ଉଭେଇଗଲା । ନିଜର ପ୍ରାଣଠାରୁ ଯାହାକୁ ଅଧିକ ଭଲ ପାଉଥିଲା ତାକୁ ସେ ଖୁନ୍ କରି ଦେଇଛି । କୋହ ଉଠିବା ସଙ୍ଗେ ସଙ୍ଗେ

ବେଶ ବିଚାର କରିବାକୁ ଲାଗିଲି । ନିଜର ସ୍ୱାମୀ ବ୍ରହ୍ମାନନ୍ଦଙ୍କର ମୃତ୍ୟୁ ପରେ ନିଜର ପୁତ୍ର ଜୀବନ ସଂଗୀ ସଞ୍ଚିତ ଜୀବନ ସରସମସ୍ତକର ନେବ ବୋଲି ସ୍ୱପ୍ନା ବିସ୍ତର କରିଥିଲା । ମୋତେ ଖୁନ୍ କରି କି ଜଘନ୍ୟ କାମ କରିଛି ସେ ବୁଝିନେଲି । ମୋ ଦେହରୁ ରକ୍ତ ସ୍ରୁତ ଉଠିବା ଦେଖି ସ୍ୱପ୍ନାର ଦେହ ଆଉ ସହିଲା ନାହିଁ । ଶେଷରେ ନିଜେ ଛୁରି ଆଘାତ ପ୍ରାପ୍ତ ହୋଇ ମୋ ଉପରେ ଢଳିପଡ଼ିଲା ।

# ଦାରୋଗା ବାବୁ

ମୋତେ ମାରନ୍ତୁ ଦାରୋଗା ବାବୁ, ମୋତେ ମାରନ୍ତୁ । ମୁଁ ବଦମାଶି କରି ଜାଣେ ନା । ଓଃ...... ମୋତେ ମାରନ୍ତୁ ଦାରୋଗା ବାବୁ ।

ଅଶ୍ରୁ ଛଳ ଛଳ ନୟନରେ ତାର ଭରି ହୋଇଥିଲା କାତରତା । କରୁଣ ନତବଦନକୁ ଭ୍ରୂକ୍ଷେପ ନ କରି ଲୁହାକୁ କମାର ପ୍ରହାର ଭଳି ପ୍ରହାର କରି ଯାଉଥିଲେ ଦାରୋଗା ବାବୁ । ତଥାପି ଶୁଭୁଛି ମୋତେ ମାରନ୍ତୁ ଦାରୋଗା ବାବୁ...... ମୁଁ ବଦମାଶି କରିନି ।

ସେ ଜଣେ ଦକ୍ଷ ପୋଲିସ ଅଫିସର । ଅସଲ କଥା ଆଦାୟ କରିବାରେ ତାଙ୍କର ଖୁବ୍ ପାରଦର୍ଶିତା ଅଛି । ତଥାପି ନିରାଶ ହେଲେ । ଏହି କଣ୍ଟକିତ ବେହାଲାତରେ ସେ କେତେ

ଜଟିଳ ସମସ୍ୟାର ସମାଧାନ କରି ଦେଇଛନ୍ତି । କେତେ କେତେ ଡକାୟତ, ଖଳ, ଗୁଣ୍ଡଙ୍କୁ ଆୟତ୍ତ କରି ପାରିଛନ୍ତି । କିନ୍ତୁ...... ବାପୁ, ଥିଜ ଏ ସବୁ କଣ ହୋଇ ଯାଉଛି । ଅଧିକ ଆଘାତ ପରି- ବାକୁ ଆଉ ମନ ବଳଲା ନାହିଁ । ନିର୍ଜୀବ ଦେହ ଶକ୍ତିକୁ ଆଉ ଯେମିତି ହୁକୁମ ମାନିବାକୁ ପ୍ରସ୍ତୁତ ନୁହେଁ । ଶେଷରେ ବାଳକଟି ଉପରେ ତାଙ୍କର ନାଲି ଆଖିରେ ଦୃଷ୍ଟି ବୁଲାଇ ଆଣି ଅନୁଭବ କଲେ—ବାଳକଟି ବେହୋସ ହୋଇ ପଡଛି । ଯେଉଁ ଓଷ୍ଠ ଦୁଇଟି କିଛି କ୍ଷଣ ପୂର୍ବେ ପ୍ରକମ୍ପିତ ହେଉଥିଲା ଆଉ କରୁଣ ନିବେଦନ କରୁଥିଲା, ତାହା କ୍ରମେ କ୍ଷୀଣ ହୋଇ ଯାଉଛି । ଗୋରା ତକ ତକ ଶରୀରରେ ତାର ଫୁଟି ଉଠୁଛି ଆଘାତର ଚିହ୍ନ । ସେଗୁଡ଼ିକ ଯେମିତି ଆହ୍ୱାନ କରୁଛନ୍ତି......ହୃଦୟର କାର୍ଣ୍ଣିକ ବନ୍ଦ ହୋଇଗଲା, ଦାରୋଗା ବାବୁ ?...ମୁଁ ବର୍ତ୍ତମାନ ଅର୍ଦ୍ଧ ନିର୍ଜୀବ ହୋଇଗଲିଣି । ଆଉ ଶୀଥିଳତା କାହିଁକି ?

ଦାରୋଗା ବାବୁଙ୍କର ଏକ ମାନସିକ ଅସ୍ଥିରତା ଆସିଲେ । ତଥାପି ପୋଲିସ ଲୋକ ସେ । ଅତି ଅଳ୍ପ ସମୟରେ ଧୈର୍ଯ୍ୟ ପରିଚୟ କରି ନେଲେ ।

ବାଳକଟିର କ୍ଷତ ବିକ୍ଷତ ଶରୀରଟିକୁ ହସପିଟାଲକୁ ପ୍ରେରଣ କରିଗଲା । ପୋଲିସ ଜୀବନରେ ଏଇ ଏକ ନୂଆ ଘଟଣା ବୋଲି ଦୁଃଖ କରିବାର ଲକ୍ଷଣ ତାଙ୍କଠାରେ ଦେଖା ଯାଉ ନଥିଲା ।

ହସପିଟାଲର ଏକ ଶଯ୍ୟା ଉପରେ କ୍ଷତ ବିକ୍ଷତ ବାଳକର ଶରୀର ପଡ଼ିଛି । ଯନ୍ତ୍ରଣା ପୂର୍ଣ୍ଣ ଶବ୍ଦରେ ବିଳାପ କରି ଯାଉଛି । ପାଖରେ କଜର କେହି ନାହିଁ । ଜଣେ ନର୍ସ ଅଛନ୍ତି । ସବୁ ଦିନ

ପରି ତପସ୍ୱୀ ନର୍ସ ଜଣଙ୍କ ମଧ୍ୟ ନିଜର କର୍ତ୍ତବ୍ୟରେ ଅବହେଳା କରିପାରୁ ନାହିଁ । ହାଜତଟିର ଯନ୍ତ୍ରଣା ନର୍ସ ପାଇଁ ଆଣି ଦେଉଛି ବ୍ୟଥା । ସକଳ ଯତ୍ନ ନେବାପାଇଁ ତତ୍ପର ହୋଇ ଉଠୁଛି ମନଟାକୁ ଟିକାଏ ହାଲୁକା କରିବା ପାଇଁ ପିବାକୁ ଇଚ୍ଛାଥିଲେ ମଧ୍ୟ ଯାଇ ପାରୁନାହିଁ । ଅସହ୍ୟ ଯନ୍ତ୍ରଣାରେ ବାରଖାନା ହୋଇ ପ୍ରଳାପ କରୁଛି ...... ।

ପରୁ, ତୋ ଆଖିରେ ଲୁହ କାହିଁକି ? କଣ ଆଜ୍ଞା ଦଣ୍ଡ ଦେଲେ ? ଉତ୍ତର ଦେଇ ପାରିଲୁ ନାହିଁ ? ନା, ନା......ମୁଁ ଭୁଲ କରୁଛି । ତୁ ନିଶ୍ଚୟ ଉତ୍ତର ଦେଇଥିବୁ । ତେବେ କଲମ, ବହି, ଖାତା ନେବାରେ ବିମୁଖ ହେଲୁ କାହିଁକି, ତୋର ଆଖିରେ ଏ ଲୁହ ? ବୋଧେ କଣ ଖାଇବ ନାହିଁ ? କେତେ ଦିନ ଆଉ ନଖାଇ ରହିବ ? ହଁ ମୁଁ ମନ୍ଦିରରୁ ପ୍ରସାଦ ନେଲେ ତାହା ସେବନ କରି ସାରି ଭୋଜନ କରିବ ।

ପରୁ ! ସତ କହୁ, ତୋ ପାଇଁ ଆଜି କିଛି ନେଇ ପାରୁ ନାହିଁ । କିନ୍ତୁ ତୋ ପାଇଁ କଲମ, ବହି, ଖାତା କିଣି ଦେଉଛି । ବନା ସାହୁ ଦୋକାନରୁ ମାଗିନେବୁ । ହଁ ଭଲ ପଢ଼ିବୁ । ପରିବାରର ନାଁ ରଖିବୁ । ବୋଉକୁ କହିବୁ ତାର ବଡ ପୁଅ ଆଜି ତାକୁ ଦେଖି ପାରିବ ନାହିଁ । ବନା ସାହୁ ଦୋକାନରେ ପୂଜା ସାମଗ୍ରୀ କିଣି ରଖି ଦେଇଛି । ଶୀଘ୍ର ଆସି ନେଇଯିବୁ । ଆଜି ଶୀଘ୍ର ଦେବ ପୂଜା ଶେଷ କରି ବୋଉକୁ ପ୍ରସାଦ ସେବନ କରାଇ ଦେବୁ । ନୋହିଲେ ପ୍ରସାଦ ସେବନ କରିବା କେତେ ଦିନ ପାଇଁ ହୋଇ ପାରିବ ନାହିଁ । ଆଉ ସେ କେତେ ଦିନ ଉପ-ବାସରେ ରହିବ ?

ପରୁ ! ତୋତେ ମୁଁ ଏତେ ସ୍ନେହ କାହିଁକି କରେ ? କଣ ସାନ ଭାଇ ବୋଲି ? ବୋଉ ମୋତେ ଏତେ ଆଦର କାହିଁକି କରେ ? କଣ ଗେହ୍ଲା ପୁଅ ବୋଲି ? ପରୁ, ସତେ ତୋର ପାଠ ପଢ଼ା ଏତିକିରେ ସମାପ୍ତ ହେବ ? ଆଜି ତୁ ଗୋରୁ, ଗାଈ ଚରାଇ ନେଇ ଜୀବନ ଯାପନ କରିବୁ ? ନା, ନା...ଭଗବାନ ତାହା ନ କରନ୍ତୁ । ପରୁ ପଢ଼ୁ, ବଡ ଲୋକ ହେଉ । ହେଇ ଯମାଳୟରୁ ପରୁଆନା ଆସିଗଲାଣି । ଆଉ ଅଳ୍ପ ସମୟ ପରେ ମୁଁ ଚାଲି ଯିବି ଦୂରକୁ, ବହୁ ଦୂରକୁ । ମୁଁ ଏକାକୀ କେମିତି ରହିବି...... ନା, ନା ମୁଁ ଏକାକୀ କେମିତି ରହିବି ? ଯମରାଜାଙ୍କୁ କହିବି ମୋତେ ପୁଣି ଫେରାଇ ଦିଅନ୍ତୁ । ନୋହିଲେ ......... ନୋହିଲେ......

ପରୁ, ପୁଣି ତୋ ଆଖିରେ ଲୁହ । ବୋଉ ତୋ ଆଖିରେ ବି ଲୁହ । କଣ ମୋତେ ଗୁଡ଼ିଦବ । ତୁମେ ନ ଗୁଡିଲେ ଦୂତଗଣ କଣ ଗୁଡ଼ି ଦେବେ ?

ସତେ ଯେମିତି ତାକୁ କିଏ ପ୍ରଶ୍ନ କରୁଛି ତୁମର କଣ ହୋଇଛି ଭାଇ ? ତୁ କାନ୍ଦିବୁନି ପରୁ ତୁ କହାନି ଛୁଆ ...... ।

× × × ×

କାଳ-ବୈଶାଖୀର ପ୍ରଳୟଙ୍କରୀ ନୃତ୍ୟ ଆହୁରି ସମାପ୍ତ ହୋଇ ନାହିଁ । ବାହାରେ ଲାଗି ରହିଛି ଝିପ୍ ଝିପ୍ ବର୍ଷା । ବତାସ ଭୀଷଣ ଗର୍ଜନରେ ଅବନୀ ବକ୍ଷରେ ସୃଷ୍ଟି କରୁଛି କମ୍ପନ ।

ଘାନ୍ତ ପ୍ରତିଷ୍ଠା ପାଇଁ ଶାଳଗ୍ରାମଙ୍କୁ ପାଦଚ ଶ୍ରେଣୀ ମଥାକୁ ନୁଆଁଇ ଅନେକ ପ୍ରାର୍ଥନା କରୁଛନ୍ତି । ଟେଳିଫରେ ବୈରାଗ୍ୟ ହୋଇ କରୁଛନ୍ତି ଆତ୍ମହତ୍ୟା । ତଥାପି ଏ ପ୍ରାର୍ଥନାର ମୂଲ୍ୟ ନାହିଁ, କାରଣ ପୃଥିବୀ ଉପରେ ଅତ୍ୟାଚାରର ସୀମା ନାହିଁ । ଏ ଅତ୍ୟାଚାରକୁ ସାକ୍ଷ୍ୟ ରଖିବା ପାଇଁ ଘନ ତମସାକୁ ଉଜ୍ଜ୍ୱଳେଇ ମନ୍ଦିରେ ମନ୍ଦିରେ ଭାସି ଆସୁଛି ଦୃଷ୍ଟି ଆକର୍ଷଣକାରୀ ଚନ୍ଦ୍ରଲୀର ଝଲକ । ଆଜି ସିତାଂଶୁ ଶୂନ୍ୟ ଆକାଶରେ ଭରି ଦେଉଛି ଆଲୋକ । ଏ ଆଲୋକ ପୁଣି ବୋହି ଆଣୁଛି ବଜ୍ରର ଗୁରୁଗମ୍ଭୀର ଧ୍ୱନି । ଶୂନ୍ୟ ଜନପଥ ହେଉଛି ଶବାପ୍ଲୁତ; ଅନ୍ତଃପୁରବାସୀ ହେଉଛନ୍ତି ଭୟଗ୍ରସ୍ତ ।

ଦାରୋଗା ବାବୁ ଆଜି ସ୍ଥିର ହୋଇ ଶୋଇପାରୁ ନାହାନ୍ତି । ମନେପଡ଼ି ଯାଉଛି—ମୋତେ ମାରନି ଦାରୋଗା ବାବୁ, ମୋତେ ମାରନି......ମୁଁ.. ...ବଦମାଶି କରି ଜାଣେନା । ନିଜକୁ ଯେତେ ଧୈର୍ଯ୍ୟବାନ ମନେ କଲେ ମଧ୍ୟ ଆଜି ଶୟନ କରିବା ସମ୍ଭବ ହେଉନାହିଁ । କିନ୍ତୁ ତାଙ୍କ ପତ୍ନୀ ନିଶ୍ଚିନ୍ତ ନିଦ୍ରାରେ ଶୋଇ ପାରୁଛନ୍ତି । ତାଙ୍କ ଶ୍ୱାସ ପ୍ରଶ୍ୱାସର ଶବ୍ଦ, ବାବୁଙ୍କ ମନରେ ଆଣି ଦେଉଛି ଈର୍ଷା । ସେ ଅନୁଭବ କରୁଛନ୍ତି ସେଇ କେତେକ କରୁଣ କାତର ପଦ । ବାବୁ ସ୍ଥିର ହୋଇ ରହି ପାରିଲେ ନାହିଁ । ରେଇନ କୋଟରେ ନିଜର ଶରୀରକୁ ଆବୃତ କଲେ । ହାତରେ ଟର୍ଚ୍ଚ ଧରି ହସପିଟାଲ ଆଡ଼କୁ ଯିବାପାଇଁ ପ୍ରସ୍ତୁତ ହେଲେ । ଦେଖିଲେ କନଷ୍ଟେବଲ ଦୌଡ଼ି ତାଙ୍କର ଆଡ଼କୁ ଧାଇଁ ଆସୁଛି । ଦାରୋଗା ବାବୁଙ୍କୁ ସେ ସମ୍ବାଦ ଦେଲା—ଆଜ୍ଞା, ଥାନାରେ ଯାହାକୁ ପ୍ରହାର କରାଯାଇଥିଲା ସେ ଅପରାଧୀ ନୁହେଁ । ଅପରାଧୀ ନିଜେ ଆସି ଥାନାରେ ଆତ୍ମ ସମର୍ପଣ କରୁଛି । କହୁଛି—ମୁଁ ଅପରାଧୀ । ମୁଁ ସୁବଳ ବାବୁଙ୍କର ଟଙ୍କା ଓ ଘଡି ଚୋରି କରିଛି । ଜୁଆଡି ଠିକ୍

ତାରପର କନ୍ଷ୍ଟେଣ୍ଟ । ଖୁବ୍ ବଦମାସଟିଏ ହୋଇଥିବ । କାଲେ ଧରା ପଡ଼ିଯିବ; କଠିନ ଦଣ୍ଡରୁ ଉଦ୍ଧାର ପାଇବ ଯଦି ଆତ୍ମ ସମର୍ପଣ କରିଛି ।

ଏଇ କେଇ ପଦ ଶୁଣି ବାବୁ ପ୍ରଚଣ୍ଡ ହୋଇ ଉଠିଲେ । ନିରପରାଧୀ କାଳିଆ ନିର୍ମମ ଦଣ୍ଡ ଭୋଗିଛି । ଏଥିପାଇଁ କେତେ ଅସ୍ଥିର । ରାଗରେ ନଶ ଦୁଇପଟା ତାଙ୍କର ଫୁଲି ଉଠିଲା । ଆଖିରୁ ବାହାରିଲା ଜ୍ଵଳନ୍ତା କୋଇଲାର ଧାସ । ଦାରୋଗା ବାବୁ ତାଙ୍କର ନାଲି ଦଅ ବୁଟକୁ ରାସ୍ତା ଉପରେ କଚାଡ଼ି, କଚାଡ଼ି ଥାନା ଆଡ଼କୁ ଆଗେଇ ଚାଲିଲେ । ମନରେ ତାଙ୍କର ଅସରନ୍ତ କ୍ରୋଧ, ଯେମିତି ଆଜି ପ୍ରଳୟ ଘଟିଯିବ ।

ଥାନା ଭିତରେ ଗୋଡ ଦେଉ ଦେଉ କନ୍ଷ୍ଟେବଲ୍ କହିଲା —ଆଜ୍ଞା, ଏହି ବଦମାଶ...... । ଏହାରି ଲାଗି ନିରୀହ ବାଳକଟି କେତେ ଦଣ୍ଡ ପାଇଲା ।

ଦାରୋଗା ବାବୁଙ୍କୁ ଦେଖି ଝୁଅଟି କହିଲା— ଆଜ୍ଞା ମୁଁ ଡକାୟତ, ଭୁଲରେ ନିରପରାଧୀକୁ କାହିଁକି ଦଣ୍ଡ ଦେଉଛନ୍ତି ? ମୁହଁରୁ ବାକ୍ୟ ସମାପ୍ତ ନ ହେଉଣୁ କନଷ୍ଟେବଲ୍ ହାତରୁ ସେହି ନିର୍ଘ ବେତକୁ ଛଡ଼ାଇ ନେଇ ଆରମ୍ଭ କଲେ ନିର୍ମମ ପ୍ରହାର । ମଝିରେ ମଝିରେ ଶୁଭୁଛି—ଆଜ୍ଞା ମୁଁ ଡକାୟତ । କାଳିଆ ଯାହାକୁ ଥାନାରେ ରଖିଥିଲେ ତାକୁ ମୁକ୍ତ କରନ୍ତୁ । ଅଳ୍ପ ସମୟ ପରେ କାହା ମୁଖରୁ ଶବ୍ଦ ବାହାରିଲା ନାହିଁ । ପିଲାଟି ଭୂମି ଉପରେ ଢଳି ପଡ଼ିଲା । କୋମଳ ମସ୍ତିଷ୍କ ହେଲା ଚେତନା ଶୂନ୍ୟ ।

ଦାରୋଗା ବାବୁ କନଷ୍ଟେବଲଙ୍କୁ ହୁକୁମ ଦେଇଗଲେ ପିଲାଟି ଯେମିତ ଉଠି ଚାଲି ନଯାଏ ।

ଦାରୋଗା ବାବୁ ହସପିଟାଲ ଆଡ଼କୁ ଚାଲିଗଲେ । ଦେଖିଲେ ବାଳକଟିର ଅବସ୍ଥା କ୍ରମେ କ୍ରମେ ସାଙ୍ଘାତକ ହେଉଛି ।

× × × ×

ଏ ଉତ୍ପୀଡ଼ନ ଜନତା ମାନସରେ ସୃଷ୍ଟି କଲା ଆନ୍ଦୋଳନ । ସରକାରଙ୍କ ନିକଟରେ ଉପସ୍ଥାପିତ କଲେ ତଦନ୍ତର ଦାବୀ । ନିଯୁକ୍ତ ହେଲେ ତଦନ୍ତ କମିଶନର ବସୁରପତି । ଆରମ୍ଭ ହେଲା ଘମାଘୋଟ ତଦନ୍ତ । ଉଦ୍‌ଘାଟିତ ହେଲା ରହସ୍ୟମୟ ତଥ୍ୟ । ସମ୍ବାଦ ପତ୍ରରେ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଲା—

ମୁଁ ବସୁରପତି ଅଚ୍ୟୁତାନନ୍ଦ ଦାସ ଦୀର୍ଘ ଦୁଇମାସ ତଦନ୍ତ ଚଳାଇ ଓ ବଭିନ୍ନ ସାକ୍ଷ, ପ୍ରମାଣ ଗ୍ରହଣ କରି ନିମ୍ନଲିଖିତ ସିଦ୍ଧାନ୍ତରେ ପହଞ୍ଚିଲି ।

ରାମ ପୁରର ଜଣେ ଗରିବ ବ୍ରାହ୍ମଣ ବାଳକ ଚଳିତ ବର୍ଷ ୧୫ ତାରିଖ ସୋମବାର ଦିନ ହରିପୁର ହାଟକୁ ଆସିଥିଲେ । ଯଥେଷ୍ଟ ସାକ୍ଷ୍ୟ ଗ୍ରହଣ ପରେ ଏ ତଥ୍ୟ ମିଳିଲା ଯେ, ସୁଭାଷଚନ୍ଦ୍ର ପଟ୍ଟନାୟକ ନାମଧେୟ ଜଣେ ଯୁବକ ଉକ୍ତ ହାଟରେ ଜୁଆଖେଳୁ ଥିଲେ । ଅପାରଗତା ହେତୁ ଜୁଆରେ ଅନେକ ଅର୍ଥ ହରାଇଲେ । ତେବେ ମଧ୍ୟ ଜୁଆର ଆକର୍ଷଣରୁ ନିବୃତ୍ତ ହୋଇ ନଥିଲେ ।

ନିଜର ହସ୍ତ ଘଡ଼ିକୁ ସୁବୁଦ୍ଧି ଦୋକାନରେ ବନ୍ଧକ କରି ଦିଆଗଲା । ଏହାକୁ ନଟବର ସୁବୁଦ୍ଧି ନିଜେ ସ୍ୱୀକାର କରିଛନ୍ତି ।

ପୁଣି ଏଠାରେ ଉଲ୍ଲେଖ କରିଯାଇ ପାରେ କି ଉକ୍ତ ଘଡ଼ିଟି ସୁଭାଷଚନ୍ଦ୍ର ପଟ୍ଟନାୟକଙ୍କର ନୁହେଁ । ଏହାକୁ କମିଶନ୍ ଭଲ ଭାବରେ ତଦନ୍ତ କରିଛନ୍ତି । ଏକ ଘଡ଼ିଟି ମୋର । ମୋର ଜଣକ ଅବସ୍ଥାନ କାଳରେ କେହି ଚୋରାଇ ନେଇଥିଲେ । ଏହାର ପ୍ରମାଣ ପତ୍ର ରୂପେ ପ୍ରେରିତ ମଧ୍ୟ ଅଛି । ଏ ସମ୍ବନ୍ଧରେ ମୁଁ ଅତୀତରେ ନୀଳ ବାଗ ପୋଲିସ ନିକଟରେ ରିପୋର୍ଟ କରିଥିଲି ।

ଅର୍ଥ ଓ ଘଡ଼ିକୁ ହରାଇ ନିଜର ଆତ୍ମରକ୍ଷାପାଇଁ ଶ୍ରୀ ପଟ୍ଟନାୟକ ଏକ କୌଶଳ ସ୍ଥିର କଲେ ଏବଂ ନିଷ୍ପାପ ବ୍ରାହ୍ମଣ ବାଳକ ଉପରେ ଦୋଷାରୋପ କଲେ । ବ୍ରାହ୍ମଣ ବାଳକକୁ ଟାଣିନେଇ ଥାନାରେ ପହଞ୍ଚାଇ ଦିଆଗଲା । ଏଥିରେ କେତେ ଜଣ ଜୁଆଖେଳାଳି ମଧ୍ୟ ଶ୍ରୀ ପଟ୍ଟନାୟକଙ୍କୁ ସାହାଯ୍ୟ କରିଥିଲେ ।

ଥାନାର ଭାର ପ୍ରାପ୍ତ ଅଫିସର ଅବସ୍ଥାରେ ଏହାକୁ ଗ୍ରହଣ କଲେ ଏବଂ ଆରମ୍ଭ କଲେ ପ୍ରହାର । ବାଳକଟି ବେହୋସ ହୋଇ ପଡ଼ିଥିଲା । ତାପରେ କନଷ୍ଟେବଲ୍ ରେଡ଼ି ଏହାକୁ ନେଇ ହସ-ପିଟାଲରେ ଚିକିତ୍ସା କରାଇଲେ । ସେଠାରେ ବାଳକଟିର ନାସାଗ୍ର ପ୍ରଭୃତି ସିଲେଇ କରିବାକୁ ପଡିଥିଲା । ଡାକ୍ତର ମହାଶୟ ସାକ୍ଷ୍ୟ ଦେଇ ଏହା ସ୍ୱୀକାର କରିଥିଲେ । ବାଳକଟିର ବକ୍ଷ ଓ ପୃଷ୍ଠ ଦେଶକୁ ଖୁବ୍ ବେତାଘାତ ହୋଇଥିବା କଥା ଡାକ୍ତର ମହାଶୟ ସ୍ୱୀକାର କରିଛନ୍ତି । ବାଳକଟି ମର୍ମନ୍ତୁଦ ଯନ୍ତ୍ରଣା ଭୋଗ କରୁଥିଲା

ଟଙ୍କଟେଙ୍କୁ ନିରୁଣି ପ୍ରଲୋପ କରୁଥିଲେ । ଏହା ସେଷ୍ଟିଦନ କର୍ତ୍ତବ୍ୟରେ ଥିବା ନିହ୍ନ ଜଣକ ବର୍ଣ୍ଣନା କରିଛନ୍ତି ।

ଅବଶେଷରେ ବାଳକଟିର ଅକାଳ ବିୟୋଗ ଘଟି ଯାଇଥିଲା ।

ଗୋଟିଏ ନିଷ୍ପାପ ବାଳକର ଏହି ଅବସ୍ଥା ଜାଣିପାରି, ଆଉ ଜଣେ ବାଳକ ତାଙ୍କୁ ଉଦ୍ଧାର କରିବାପାଇଁ ନିଜକୁ ବିସର୍ଜନ କଲେ ଏବଂ ନିଜକୁ ଅପରାଧୀ ବୋଲି ପରିଚୟ କରାଇ ତାଙ୍କୁ ଉଦ୍ଧାର କରିବା ପାଇଁ ତତ୍ପର ହେଲେ । ଶେଷରେ ତାଙ୍କୁ ମଧ୍ୟ ମର୍ମନ୍ତୁଦ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଲା ।

ଜଣେ ବାଳକର ମୃତ୍ୟୁ, ଅନ୍ୟ ଜଣଙ୍କର ସାଂଘାତିକ ଅବସ୍ଥା ଏହି ଅଞ୍ଚଳବାସୀଙ୍କ ମନରେ ଉତ୍ତେଜନା ଆଣି ଦେଲା ।

ରାମ ପୁର ମଧ୍ୟ ଇଂରେଜୀ ବିଦ୍ୟାଳୟରେ ସେ ଦିନ ଦ୍ୱିତୀୟ ବାଳକ ଜଣଙ୍କ ଅନୁପସ୍ଥିତ ଥିବାରୁ ପ୍ରଧାନ ଶିକ୍ଷକ ମହୋଦୟ ଗୁରୁତ୍ୱ ଆରୋପ କଲେ । ଛାତ୍ରମାନେ ଅଭିଯୋଗ କଲେ— ଦାରୋଗା ବାବୁ ନିର୍ଦ୍ଦୟ ଭାବେ ଜଣଙ୍କର ପ୍ରାଣ ନେଇଛନ୍ତି । ଆଉ ଜଣଙ୍କୁ ସାଂଘାତିକ ବେଦମ ଘାତ କରି ବେହୋସ କରି ଦେଇଛନ୍ତି ସମସ୍ତଙ୍କ ନିକଟରେ ଏ ଅନ୍ୟାୟର ପ୍ରତିବାଦ କଲେ । ମିଥ୍ୟା ଅଭିଯୋଗ ଆରୋପ କରି ଦାରୋଗା ବାବୁ ପ୍ରଧାନ ଶିକ୍ଷକଙ୍କୁ ବନ୍ଦୀ କଲେ । ଏହା ଫଳରେ ଶିକ୍ଷକ ମହାଶୟ ସ୍କୁଲରୁ ସସ୍‌ପେଣ୍ଡ ହେଲେ । ଛାତ୍ର ଓ ଅଭିଭାବକଙ୍କଠାରୁ ବିଭିନ୍ନ ସାକ୍ଷ୍ୟ ଓ ପ୍ରମାଣ ଗ୍ରହଣ କରି ଏ କମିଶନ ବିଚାର କରେ କି

ପ୍ରଧାନ ଶିକ୍ଷକ ମହାଶୟ ନର୍ଦ୍ଦୋଷ । ତାଙ୍କର କୌଣସି ଦୋଷ ନାହିଁ । ଗଣତନ୍ତ୍ରରେ ଅନ୍ୟାୟର ପ୍ରତିବାଦ କରିବା ସମସ୍ତଙ୍କର ଅଧିକାର ଅନ୍ତର୍ଭୁକ୍ତ । ତେଣୁ ତୁରନ୍ତ ଉକ୍ତ ମହାଶୟଙ୍କୁ ଖଲାସ କରାଯାଉ ଏବଂ ସସ୍ପେନ୍ସନ୍ ଆଦେଶକୁ ପ୍ରତ୍ୟାହାର କରାଯାଉ । ପୁଣି ତାଂକର ଚାକିରୀକୁ ନିୟମିତ କରାଯାଉ ।

ପୁଣି ସ୍ଥାନୀୟ ଜନତା ମଧ୍ୟ ଥାନା ବାବୁଙ୍କ ପ୍ରତି ଆସ୍ଥା ନାହିଁ । ତାଙ୍କ ଅଧିକାରର ଅପବ୍ୟବହାର କରୁଥିବା ଯୋଗୁଁ ଏ ଅଞ୍ଚଳରେ ଆତଙ୍କ ସୃଷ୍ଟି ହୋଇଛି । ଅଧିକାରର ଅପ-ବ୍ୟବହାର କରି ସେ ବିପୁଳ ଅର୍ଥର ମାଲିକ ହୋଇ ପାରିଛନ୍ତି ।

ହରିପୁରର ଗଦା ବାରିକ, ହରିଆ ରାଉତ, ତେମି ପ୍ରଧାନ, ଆଲଆର ଆପନା, କୁଡ଼ୁଙ୍ଗୀ ଝୀମାଦ୍ରୀ, ପର୍ଶୁରାମ କାଣ୍ଡଙ୍କଠାରୁ ସାକ୍ଷ୍ୟ ଗ୍ରହଣ କଲାବେଳେ ଚମତ୍କାର ତଥ୍ୟମାନ ପ୍ରମାଣ ସହିତ ବର୍ଣ୍ଣନା କରିଛଂନ୍ତି । ଏଠାରେ ଆଦିବାସୀ ମହିଳା ମାନଂକ ପ୍ରତି ଅତ୍ୟାଚାର କରିବାର ବହୁ ବିଧ ପ୍ରମାଣ ରହିଛି । ବର୍ତ୍ତମାନ ଜଣେ ଗର୍ଭିଣୀ ଆଦିବାସୀ ସ୍ତ୍ରୀ ଏ ବିଷୟରେ ଆପତ୍ତି ଉଠାଇଛନ୍ତି ।

ଗରିବ ଓ ଆଦିବାସୀ ମାନଂକର ସରଳତାର ସୁଯୋଗ ନେଇ ନିଜ କାର୍ଯ୍ୟରେ ବେଠି ଖଟାଇବାର ଯଥେଷ୍ଟ ପ୍ରମାଣ ମିଳିଛି ।

ଥାନା ବାବୁଂକ ଘର ଖାନତଲାସରୁ ଜବତ ହୋଇ ଥିବା ଆପତ୍ତି ଜନକ କାଗଜ ପତ୍ରରୁ ଓ ବେଆଇନ ଭାବେ

ଜମାଥିବା ସୁନା ଓ ଅର୍ଥରୁ ଜଣାପଡ଼େ ସେ ବିପୁଳ ଅର୍ଥର ଅଧିକାରୀ । ଏ ଅର୍ଥ ଅନ୍ୟାୟ ଭାବେ ଅର୍ଜନ କରାଯାଇଛି ।

ଦାରୋଗା ବାବୁ ଦୈନିକ ଯାହା ଖର୍ଚ୍ଚ କରନ୍ତି ତାହା ପ୍ରକୃତ ଆୟର ପ୍ରାୟ ଦଶ ଗୁଣ । ଏହି ଅର୍ଜନ ଏକ ଅବାଞ୍ଛିତ ଅର୍ଜନ ।

ଏହା ଛଡ଼ା ଡାକୟ ମାନଂକୁ ହାତ୍‌କୋଟ ଦେଇ ନିଜର ବଦଳି ଆଦେଶକୁ ସ୍ଥଗିତ ରଖିବାର ଏକାଧିକ ଚିଠି ହସ୍ତଗତ ହୋଇଛି ।

ଗୋଟିଏ ଦିଗରେ ଅର୍ଥର ଲାଳସା, ଅନ୍ୟ ଦିଗରେ ଅତ୍ୟାଚାରର ପ୍ରବଳତା ଏ ଅଂଚଳରେ ଆତଂକ ସୃଷ୍ଟି କରିଛି ।

ପ୍ରକାଶ ଥାଉ କି ଶ୍ରୀମାନ୍ ସୁଭାଷଚଂଦ୍ର ପଟ୍ଟନାୟକ ହେଉଛଂତି ଏହି ଦାରୋଗା ବାବୁଙ୍କ ସୁଯୋଗ୍ୟ ପୁତ୍ର ଏବଂ ରାମ ପୁର ବିଦ୍ୟାଳୟର ବାଳକ ଜଣକ ଉକ୍ତ ମୃତ ବାଳକର ଭ୍ରାତା ।

ପୋଲିସ ଅଫିସରଙ୍କ ପୁତ୍ରଠାରୁ ଚୋରି ଏକ ଅଦ୍ଭୁତପୂର୍ବ ଘଟଣା ବୋଲି ଭାବି, ଦାରୋଗାବାବୁ ଏ କାଣ୍ଡ ଘଟାଇଛନ୍ତି । ପୁଣି ଏଠାରେ ଉଲ୍ଲେଖ କରାଯାଇପାରେ କି ଉକ୍ତ ଘଡି ଟେଣ୍ଡ୍ରିକ ଦାରୋଗା ବାବୁ ଜଣେ ଡକାୟତଠାରୁ ପୁରସ୍କାର ରୂପେ ପାଇଛନ୍ତି । କିନ୍ତୁ ପ୍ରକୃତରେ ଏହା ମୋର ଘଡ଼ି ।

ମୋଟ ଉପରେ ରାମଚନ୍ଦ୍ର ପୁରର ବ୍ରାହ୍ମଣ ଯୁବକ ନିର୍ଦ୍ଦୋଷ । ତାର ଭାଇ ପ୍ରତାପ ମିଶ୍ର ମଧ୍ୟ ନିର୍ଦ୍ଦୋଷ । ତାର ଭଉଣୀକୁ ଉଦ୍ଧାର କରିବାକୁ ଯାଇ ଏ ସାଙ୍ଘାତିକ ଦଣ୍ଡ ଭୋଗ କରୁଛି । କିନ୍ତୁ ଶ୍ରୀ ସୁଭାଷ ଚନ୍ଦ୍ର ପଟ୍ଟନାୟକ ଦୋଷୀ । ଦୋଷରୁ ମୁକ୍ତ ହେବାପାଇଁ ମିଥ୍ୟା ଅଭିଯୋଗ ଆଣି ନିଜ ପିତାଙ୍କୁ ଦେଇଥିଲେ । ପିତା ପୋଲିସ ଅଫିସର ହୋଇଥିବାରୁ ଅବିଚାର ଭାବେ ଆଘାତ କରିଥିଲେ । ଫଳରେ ଗରିବ ବ୍ରାହ୍ମଣ ପରିବାର ଅସହାୟ ହେଲା । ତେଣୁ ଏ ପରିବାରକୁ କ୍ଷତି ପୂରଣ ଦିଆଯାଉ । ଶ୍ରୀମାନ ସୁଭାଷଚନ୍ଦ୍ର ପଟ୍ଟନାୟକ ଓ ତାଙ୍କୁ ସାହାଯ୍ୟ କରିବାକୁ ଯାଇ ମିଥ୍ୟା ସାକ୍ଷ୍ୟ ଦେଇଥିବା ଜୁଆ ଖେଳାଳିମାନଙ୍କୁ ଶାସ୍ତି ଦିଆଯାଉ ।

ଦାରୋଗା ବାବୁ ଅଧିକାରର ଅପବ୍ୟବହାର କରିଥିବାରୁ ତାଙ୍କୁ ତୁରନ୍ତ ଚାକିରିରୁ ବହିଷ୍କାର କରାଯାଉ ଓ ମୃତ୍ୟୁ ଜନିତ ଘଟଣା ପାଇଁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଉ ।

× × × ×

ସମ୍ବାଦ ପତ୍ରରେ ପ୍ରଥମ ପୃଷ୍ଠାରେ ପୃଥୁଳ ଅକ୍ଷରରେ କମିଶନଙ୍କ ରିପୋର୍ଟ ପ୍ରକାଶ ପାଇଲା । ଦାରୋଗା ବାବୁଙ୍କର ଚାକିରୀ ଉଚ୍ଛେଦ ସଙ୍ଗେ ସଙ୍ଗେ ଜେଲ ଆଦେଶ ଆସି ପହଞ୍ଚିଲା । କିନ୍ତୁ ବାବୁ କୁଆଡେ ଗଲେ କେହି ଜାଣିପାରିଲେ ନାହିଁ ।

